# ଜାତିର ଏକତା-ତ୍ରିରଙ୍ଗା ପତାକା

## ସତ୍ୟବାଦୀ ବଳିଆରସିଂହ


| | | |
|---|---|---|
| ପ୍ରଥମ ମୁଦ୍ରଣ | ❑ | ତା ୨୬ ଜାନୁଆରୀ, ୨୦୦୧ (ସାଧାରଣତନ୍ତ୍ର ଦିବସ) |
| ପ୍ରକାଶିକା | ❑ | ଶୈଳବାଳା ଦେବୀ<br>ବିଶ୍ୱାତ୍ମା ପ୍ରକାଶନୀ<br>ଏମ୍ - ୨୩, ଖୋର୍ଦ୍ଧା ବି.ଡି.ଏ. କଲୋନୀ,<br>ଖୋର୍ଦ୍ଧା - ୭୫୨୦୫୫ |
| ଅକ୍ଷର ସଜ୍ଜା | ❑ | କମ୍ପ୍ୟୁଟର ଡେସ୍କମ୍ୟାନ<br>୨୦୮, କଟକ ରୋଡ଼,<br>ଭୁବନେଶ୍ୱର - ୭୫୧୦୦୬ |
| ମୁଦ୍ରକ | ❑ | ଅନ୍ନପୂର୍ଣ୍ଣା ପ୍ରିଣ୍ଟର୍ସ<br>୨୮୫, କଟକ ରୋଡ଼,<br>ଭୁବନେଶ୍ୱର - ୭୫୧୦୦୬ |
| ମୂଲ୍ୟ | ❑ | ଆଠ ଟଙ୍କା |

ପ୍ରଥମ ଅଧ୍ୟାୟ

# ପତାକାର ଇତିହାସ

ଆମେ ସମସ୍ତେ ପତାକା ସହିତ ଉଣା ଅଧିକେ ପରିଚିତ । ଏହାକୁ ମଧ୍ୟ ଧ୍ୱଜା, ଝଣ୍ଡା ବା ନିଶାଣ କୁହାଯାଇଥାଏ । ଖଣ୍ଡେ କନାରେ ତିଆରି ପତାକାର ବ୍ୟବହାର ପୁରାତନ କାଳରୁ ଚଳିଆସିଛି । ଆଦିମ କାଳରେ ମନୁଷ୍ୟ ଦଳ ବା ଗୋଷ୍ଠୀ ହୋଇ ବାସକରୁଥିଲା । ସେମାନଙ୍କ ଜୀବନଯାପନ ପ୍ରକୃତି ଦ୍ୱାରା ପ୍ରଭାବିତ ହେଉଥିଲା । ସେମାନେ ବୃକ୍ଷଲତା ଓ ପଶୁକୁ ପୂଜା କରୁଥିଲେ । ପ୍ରତ୍ୟେକ ଗୋଷ୍ଠୀ ନିର୍ଦ୍ଦିଷ୍ଟ ବୃକ୍ଷଲତା ଓ ପଶୁକୁ ସେମାନଙ୍କର ପ୍ରତୀକ ରୂପେ ବ୍ୟବହାର କରୁଥିଲେ । ଏହାର ଚିତ୍ର ଆଙ୍କି ଭାବପ୍ରକାଶ କରୁଥିଲେ । କାଳକ୍ରମେ ଏହି ପ୍ରତୀକ ପତାକାର ରୂପ ନେଲା ।

ପ୍ରାଚୀନ କାଳରେ ପୃଥିବୀର ବହୁ ଦେଶରେ ପତାକାର ପ୍ରଚଳନ ଥିଲା । ତେବେ ଏହାର ଉତ୍ପତ୍ତି ସ୍ଥଳ ଭାରତ ବା ଚୀନ ବୋଲି ଧରାଯାଏ । ରାମାୟଣ ତଥା ମହାଭାରତରେ ଯୋଦ୍ଧାମାନଙ୍କ ରଥରେ ବିଭିନ୍ନ ସଙ୍କେତ ଥିବା ପତାକାମାନ ରହିଥିଲା । ସିନ୍ଧୁ ସଭ୍ୟତା ଓ ତତ୍‌ପରବର୍ତ୍ତୀ ସମୟରେ ମଧ୍ୟ ପତାକାର ବ୍ୟବହାର ହୋଇଥିଲା । ଚୀନରେ ଚାଉ ବଂଶ ଧଳା ରଂଗର ପତାକା ବ୍ୟବହାର କରୁଥିଲେ । ଇସଲାମ ଧର୍ମର ପ୍ରତିଷ୍ଠାତା ମହାପୁରୁଷ ମହମ୍ମଦ ଧର୍ମପ୍ରଚାର ପାଇଁ ଯୁଦ୍ଧ ଯାତ୍ରାରେ କଳାରଙ୍ଗର ପତାକାରେ ରୋମାନ ଇଗଲ ସନ୍ତକ ଗ୍ରହଣ କରିଥିଲେ । ତାଙ୍କ ପରେ ଖଲିଫା କଳାରଙ୍ଗର ପତାକାରେ ମହମ୍ମଦ ଦେବଦୂତ ସଙ୍କେତ ରଖି ଧର୍ମ ଯୁଦ୍ଧଯାତ୍ରା କରିଥିଲେ । ମସକାଟ୍ ଓ ଓମାନ୍‌ର ସୁଲତାନମାନେ ସାଧା ନାଲିରଙ୍ଗର ପତାକା ବ୍ୟବହାର କରୁଥିବାବେଳେ ଅନ୍ୟ ଇସଲାମିକ୍ ରାଷ୍ଟ୍ର ଯଥା- ଇଜିପ୍ଟ, ତୁର୍କୀ, ଟ୍ୟୁନିସିଆ, ଲିବ୍ୟା, ମାଡ଼ାଗାସ୍କର ଓ ପାକିସ୍ତାନ ଧଳାରଙ୍ଗର ପତାକା ବ୍ୟବହାର କରୁଛନ୍ତି । ପତାକା ପ୍ରଚଳନ ସମ୍ଭବତଃ ଭାରତରୁ ଆରବ ଦେଶମାନଙ୍କୁ ଓ ସେଠାରୁ ଇଉରୋପୀୟ ଦେଶମାନଙ୍କୁ ଯାଇଅଛି । ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀରେ ଇଉରୋପୀୟ ଦେଶମାନଙ୍କରେ ପତାକାରେ କ୍ରସ୍ ଚିହ୍ନ ବ୍ୟବହାର ହେଉଥିବା ଜଣାପଡ଼େ । ୧୮୬୪ ମସିହାରେ ଜେନେଭାଠାରେ ୧୨ଟି ଦେଶ ମିଳିତ ହୋଇ ଏକ ଚୁକ୍ତି କରିଥିଲେ । ଏଥିରେ ଡାକ୍ତରଖାନା, ଆମ୍ବୁଲାନସ୍ ଓ ସୈନ୍ୟ ବିଭାଗରେ କାମକରୁଥିବା ସ୍ୱାସ୍ଥ୍ୟ କର୍ମଚାରୀମାନେ ଧଳାରଙ୍ଗରେ ନାଲି କ୍ରସ୍ ଚିହ୍ନ ବ୍ୟବହାର କରିବାକୁ ସ୍ଥିରହୋଇଥିଲା ।

ସେହିଦିନଠାରୁ ଏହା ଆନ୍ତର୍ଜାତିକ ରେଡକ୍ରସ ସଂସ୍ଥାର ପ୍ରତୀକ ହୋଇ ଆସିଛି ।

ପତାକା ବିଭିନ୍ନ କାର୍ଯ୍ୟରେ ପ୍ରତୀକ ରୂପେ ପ୍ରୟୋଗ ହୋଇଥାଏ । କୌଣସି ଗୋଷ୍ଠୀ ବା ଦଳ ଗୋଟିଏ ପତାକା ତଳେ ସମବେତ ହେଲେ ସେଠାରେ ପତାକା ଏକତାର ସୂଚନା ଦିଏ । ବିଜୟ ଉଲ୍ଲାସ ଓ ଶୁଭକାର୍ଯ୍ୟରେ ପତାକାର ବ୍ୟବହାର ହୁଏ । ପୂର୍ବର ରାଜା ମହାରାଜା, ଶାହା ବାଦ୍‌ଶାହାଙ୍କ ଠାରୁ ଆରମ୍ଭ କରି ଦେବାଦେବୀ ମନ୍ଦିର ତଥା ଯଜ୍ଞପୀଠରେ ପତାକାର ବ୍ୟବହାର ଚଳିଆସିଛି । ମିଳିତ ଜାତିସଂଘ, ବିଶ୍ୱ ଅଲିମ୍ପିକ୍, ରେଡକ୍ରସ ଆଦି ପ୍ରସିଦ୍ଧ ଅନୁଷ୍ଠାନମାନଙ୍କର ସ୍ୱତନ୍ତ୍ର ପତାକା ରହିଥାଏ । ଏହା ବ୍ୟତୀତ ଆନ୍ତର୍ଜାତିକ ସଙ୍କେତ ରୂପେ ଜାହାଜମାନଙ୍କ ପାଇଁ ପ୍ରାୟ ଚାଳିଶ ପ୍ରକାର ରଙ୍ଗ ଓ ଆକାରର ପତାକା ଅଛି ।

ଭାରତୀୟ ନୌବାହିନୀର ସମସ୍ତ ଜାହାଜ, ବୁଡ଼ାଜାହାଜ, ବିମାନ ଆଦିରେ ପରାଧୀନ ଭାରତରେ ଚଳି ଆସୁଥିବା ବ୍ରିଟିଶ୍ ଔପନିବେଶବାଦର ପ୍ରତୀକ ସେଣ୍ଟଜର୍ଜଙ୍କ କ୍ରସ୍ ଚିହ୍ନ ଥିଲା । ୨୦୦୧ ସ୍ୱାଧୀନତା ଦିବସରେ ସଂପ୍ରତି ନୂତନ ଧଳା ଝଣ୍ଡାରେ ଲଙ୍ଗର ଚିହ୍ନ ଉପରେ ଅଶୋକ ସ୍ତମ୍ଭ ସ୍ଥାନିତ ହୋଇଛି ।

ବିବିଧ ପରିସର ମଧ୍ୟରେ ପତାକାର ବ୍ୟବହାର ହୋଇଥାଏ । ସ୍ୱାଗତ ସମ୍ବର୍ଦ୍ଧନା ବେଳେ ପତାକା ବ୍ୟବହାର କରାଯାଇଥାଏ । ମାତ୍ର ଆନ୍ଦୋଳନ ବା ବିକ୍ଷୋଭ ପ୍ରଦର୍ଶନ ବେଳେ କଳାରଙ୍ଗର ପତାକା ବ୍ୟବହାର କରି ବିରୋଧ କରାଯାଇଥାଏ । ରେଳଗାଡ଼ି ଗନ୍ତବ୍ୟସ୍ଥାନକୁ ଯିବାପାଇଁ ନୀଳରଙ୍ଗର ପତାକା ହଲାଇ ସୂଚନା ଦିଆଯାଉଥିବାବେଳେ, ନାଲିରଙ୍ଗର ପତାକା ଦ୍ୱାରା ବିପଦର ସୂଚନା ପ୍ରଦାନ କରାଯାଇଥାଏ ।

ବିଭିନ୍ନ ପତାକା ଭିନ୍ନ ଭିନ୍ନ ଭାବ ଓ ଚେତନାର ବାର୍ତ୍ତାବହ ହୋଇଥାଏ । କଳାରଙ୍ଗର ପତାକା ଯେପରି ବିରୋଧ କରିବା ବୁଝାଏ; ସେହିପରି ଲାଲ ପତାକା ବିପ୍ଳବ, ହଳଦିଆ ପତାକା ସେବା, ଧଳା ପତାକା ଶାନ୍ତି ଓ ସତ୍ୟ, ବିପରୀତମୁଖୀ ପତାକା ଉତ୍ତୋଳନ ଜାତିର ଦୁର୍ଦ୍ଦଶା, ଦଣ୍ଡର ମଧ୍ୟଭାଗରେ ପତାକା ଉତ୍ତୋଳନ ଜାତୀୟ ଶୋକ ଆଦିର ପ୍ରତୀକ ହୋଇଥାଏ । ସମାଜବାଦୀ ବିପ୍ଳବରୁ ଋଷିଆ ଓ ଚୀନର ରାଜନୈତିକ ଆଦର୍ଶ ପ୍ରକଟିତ ହୋଇଥିବାରୁ ସେ ଦେଶର ଜାତୀୟ ପତାକାର ରଙ୍ଗ ଲାଲ ଅଟେ ।

ପ୍ରତ୍ୟେକ ଦେଶର ଜାତୀୟ ପତାକା ଅଛି । ଗୋଟିଏ ଦେଶର ଗର୍ବ ଓ ଗୌରବର ପତୀକ ହେଉଛି ଜାତୀୟ ପତାକା । ସାଧୀନ ଦେଶମାନେ ନିଜ ନିଜର ପତାକା

ବ୍ୟବହାର କରିଥାନ୍ତି । ସଚେତନ ନାଗରିକମାନଙ୍କର ଜାତୀୟ ପତାକାକୁ ସମ୍ମାନ ପ୍ରଦର୍ଶନ ସେମାନଙ୍କର ଦେଶପ୍ରେମର ନିଦର୍ଶନ ଅଟେ । ଆମ ଦେଶର ସମସ୍ତ ପ୍ରମୁଖ ସରକାରୀ କାର୍ଯ୍ୟାଳୟ ତଥା ବିଦେଶରେ ଥିବା ଭାରତୀୟ ଦୂତାବାସମାନଙ୍କରେ ଜାତୀୟ ପତାକା ଉତ୍ତୋଳିତ ହୁଏ । ନୂଆଦିଲ୍ଲୀର ଚାଣକ୍ୟପୁରୀଠାରେ ଥିବା ବିଭିନ୍ନ ଦେଶର ରାଷ୍ଟ୍ରଦୂତ ଓ ହାଇକମିଶନରମାନଙ୍କ କାର୍ଯ୍ୟାଳୟ ଭବନରେ ସେହି ଦେଶର ଜାତୀୟ ପତାକାମାନ ଉଡୁଥାଏ ।

## ପ୍ରାଚୀନ ଧ୍ୱଜା

ପ୍ରାଚୀନ କାଳରେ ପତାକାର ଅନ୍ୟନାମ ଥିଲା 'ଧ୍ୱଜା' । ରାଜା ବା ସୈନ୍ୟଦଳର ସଙ୍କେତ ରୂପେ ପତାକାସହ ଯୁକ୍ତ ଦଣ୍ଡକୁ ଧ୍ୱଜା କୁହାଯାଉଥିଲା । ଅନ୍ୟ ଅର୍ଥରେ ଧ୍ୱଜା ତିନୋଟି ଜିନିଷର ସମାହର ଥିଲା । ପ୍ରଥମଟି ହେଲା 'ପତାକା', ଯାହା ଖଣ୍ଡିଏ କନାରେ ତିଆରି (ଅତି ପ୍ରାଚୀନ କାଳରେ ତାହା ଗଛର ବକଳରେ ତିଆରି ହେଉଥିଲା) । ଦ୍ୱିତୀୟଟି ହେଲା 'କେତୁ' ଅର୍ଥାତ୍ ଯାହା ରାଜା ବା ଦଳର ସଙ୍କେତ ପତାକାରେ ଅଙ୍କିତ ହୋଇଥାଏ, ଯଥା-ଅର୍ଜୁନଙ୍କ ରଥରେ ବାନରକେତୁ ଓ ଦୁର୍ଯ୍ୟୋଧନଙ୍କ ରଥରେ ସର୍ପକେତୁ ସ୍ଥାନ ପାଇଥିଲା । ତୃତୀୟଟି ହେଲା 'ଯଷ୍ଟି' ବା 'ଦଣ୍ଡ', ଯାହା ପତାକା ବହନ କରେ । ବହୁ ବିଦ୍ୱାନଙ୍କ ମତରେ ପତାକା ଓ ଧ୍ୱଜାର ଅର୍ଥ ଏକ । କିନ୍ତୁ ଏଥିରେ ସାମାନ୍ୟ ପ୍ରଭେଦ ଥିଲା ବୋଲି କେତେକ ସୂଚନା ଦିଅନ୍ତି । ଅର୍ଥାତ୍ ଧ୍ୱଜା ଥିଲା ଚତୁଃଷ୍କୋଣୀ ଓ ପତାକା ତ୍ରିକୋଣୀ । ପୁନଶ୍ଚ ଧ୍ୱଜା ରାଜାଙ୍କ ନଅର ବା ଦୁର୍ଗ ଉପରେ ଶୋଭା ପାଉଥିଲାବେଳେ ପତାକା ସେନାପତିଙ୍କ ଅଶ୍ୱରଥ ବା ଗଜରଥ ଉପରେ ଶୋଭାପାଉଥିଲା । ମହାଭାରତରେ ସୈନ୍ୟଦଳକୁ 'ଧ୍ୱଜିନୀ' କୁହାଯାଇଛି । କିନ୍ତୁ ରାମାୟଣରେ ସୈନ୍ୟଦଳକୁ 'ପତାକିନୀ' କୁହାଯାଇଛି ।

ଜୈନ ଓ ବୌଦ୍ଧଧର୍ମର ବିକାଶ ସମୟରେ ବହୁ ଧ୍ୱଜ ସ୍ତମ୍ଭ ନିର୍ମିତ ହୋଇଥିଲା । ସମ୍ରାଟ ଅଶୋକଙ୍କ ଦ୍ୱାରା ସାରନାଥଠାରେ ନିର୍ମିତ ବୌଦ୍ଧ ଶାନ୍ତିସ୍ତୂପରୁ ଧର୍ମଚକ୍ର ଅଣାଯାଇଛି । ଏହା ଆମର ଜାତୀୟ ପତାକାରେ ସ୍ଥାନ ପାଇଛି । ଜୈନଧର୍ମର ପତାକାରେ ପାଞ୍ଚଟି ରଙ୍ଗର ପଟି ଅଛି । ହିନ୍ଦୁ, ବୌଦ୍ଧ ଓ ଜୈନଧର୍ମରେ 'ପତାକା ଦାନ'କୁ ପୁଣ୍ୟକର୍ମ ରୂପେ ବିବେଚନା କରାଯାଇଛି । ନିଜ ନିଜ ଧର୍ମର ଆରାଧ୍ୟ ଦେବ ବା ଦେବୀଙ୍କୁ ଧର୍ମୀୟ ପତାକା ଦାନ କରାଯାଇଥାଏ । ଏହା 'ଧ୍ୱଜାଦାନ' ରୂପେ ପ୍ରସିଦ୍ଧ ।

ମରହଟ୍ଟାବୀର ଛତ୍ରପତି ଶିବାଜୀ ଗୁରୁ ରାମଦାସଙ୍କୁ ନିଜର ରାଜ୍ୟ ସମର୍ପଣକରି ରାଜ୍ୟଶାସନ କରୁଥିଲେ । ତେଣୁ ସେ ଗୁରୁଙ୍କ ଗୈରିକ ବସ୍ତ୍ରକୁ ସମ୍ମାନ ଦେଇ ଗୈରିକ ପତାକା ବ୍ୟବହାର କରୁଥିଲେ । ଏହା 'ଭଗୱା ଝଣ୍ଡା' ରୂପେ ପରିଚିତ ଥିଲା । ସମ୍ପ୍ରତି ଏହି ପତାକା ପୃଥିବୀର ବୃହତ୍ତମ ସ୍ୱେଚ୍ଛାସେବୀ ସଂଗଠନ 'ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ'ର ଧ୍ୱଜାରୂପେ ବ୍ୟବହୃତ ହେଉଛି । ଉତ୍କଳର ଗଜପତି ଶ୍ରୀ ଜଗନ୍ନାଥଙ୍କ ପ୍ରତିନିଧି ରୂପେ ରାଜ୍ୟ ଚଳାଉ ଥିବାରୁ 'ନୀଳଚକ୍ର' ସଙ୍କେତ ନିଜ ପତାକାରେ ବ୍ୟବହାର କରୁଥିଲେ । ଗଜପତିଙ୍କ ଭଳି ଓଡିଶାର ସାମନ୍ତରାଜାମାନେ ସ୍ୱ ସ୍ୱ ପତାକାରେ ବିଭିନ୍ନ ସଙ୍କେତମାନ ବ୍ୟବହାର କରୁଥିଲେ । ସେଗୁଡ଼ିକ ହେଲା : ରଣପୁର-ଖଣ୍ଡା, ମୟୂରଭଞ୍ଜ ଓ ଦଶପଲ୍ଲା-ମୟୂର, ନୟାଗଡ, ଖଣ୍ଡପଡ଼ା ଓ ତାଳଚେର-ବାଘମୁଣ୍ଡ, ବଡମ୍ବା-ସିଂହମୁଣ୍ଡ, ସୋନପୁର-ଚକ୍ର, ରେଢ଼ାଖୋଲ-ପଦ୍ମ, ବାମଣ୍ଡା-ଶଙ୍ଖ, ଢେଙ୍କାନାଳ-ମୀନକେତନ, କେନ୍ଦୁଝର-ମୟୂରପୁଛ, ଆଠମଲ୍ଲିକ-କଦମ୍ବଫୁଲ, ନୀଳଗିରି-କଲରାଫୁଲ, ହିନ୍ଦୋଳ-କଟାରୀ, ପାଲଲହଡା-ସର୍ପ ଓ ନରସିଂହପୁର-କଙ୍କଡା ବିଛା ।



ଶିବାଜୀଙ୍କ ଭଗୱା ଝଣ୍ଡା

ଏହିସବୁ ତଥ୍ୟାବଳୀରୁ ଜଣାପଡେ ଯେ ପୂର୍ବେ ଭାରତବର୍ଷରେ ସମଗ୍ର ଜାତିପାଇଁ ଗୋଟିଏ ଜାତୀୟ ପତାକା ନଥିଲା । କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଏକ ଓ ଅଖଣ୍ଡ ନ ଥିଲା । ସାରା ଦେଶରେ ଅନେକ ରାଜା ମହାରାଜା ଥିଲେ । ସେମାନେ ନିଜ ନିଜ ରାଜ୍ୟର ସ୍ୱତନ୍ତ୍ର ପତାକା ଉଡ଼ାଉଥିଲେ । ମୌର୍ଯ୍ୟ, ନନ୍ଦ, ଚେତ, କୁଶାଣ, ଗୁପ୍ତ, ବର୍ଦ୍ଧନ , ଚୌହାନ, ରାଠୋର,ତୋଗଲକ,ଖିଲିଜି, ଗଙ୍ଗ, ସୂର୍ଯ୍ୟ, ଦାସ, ମୋଗଲ, ମରହଟ୍ଟା ଓ ଶିଖ୍ ଆଦି ବଂଶମାନଙ୍କର ନରପତିଗଣ ବିଭିନ୍ନ ସମୟରେ ଏ ଭୂଖଣ୍ଡରେ ଶାସନ କରୁଥିଲେ । ସେମାନଙ୍କ ମଧ୍ୟରେ ସଂହତି ନଥିଲା । ପ୍ରତ୍ୟେକ ରାଜବଂଶର ସ୍ୱତନ୍ତ୍ର ପତାକା ଥିଲା । ବିଜୟ କାମନାରେ ମତ୍ତହୋଇ ସେମାନେ ପରସ୍ପରର ରାଜ୍ୟ ଆକ୍ରମଣ କରି ଚକ୍ରବର୍ତ୍ତୀ ବୋଲାଉଥିଲେ । ତେଣୁ ସେ ସମୟରେ ଭାରତ ବର୍ଷରେ କୌଣସି ରାଷ୍ଟ୍ରୀୟ ପତାକା ନଥିଲା ।

ଇଂଲଣ୍ଡର ଇଷ୍ଟଇଣ୍ଡିଆ କଂପାନୀ ଭାରତକୁ ବାଣିଜ୍ୟ କରିବାକୁ ଆସିଲେ । ସେମାନଙ୍କ ଆଗମନ ସହ ଇଂଲଣ୍ଡର ୟୁନିଅନ ଜ୍ୟାକ୍ ପତାକାର ଭାରତରେ ପ୍ରବେଶ କଲା। ଇଂରେଜମାନଙ୍କ ଆଗମନ ପୂର୍ବରୁ ହଲାଣ୍ଡର ଡଚ୍ (ଓଲନ୍ଦାଜ) ମାନେ ଭାରତରେ ମସଲାର ଏକଚାଟିଆ କାରବାର କରୁଥିଲେ । ଇଂଲଣ୍ଡର ୨୪ ଜଣ ବଣିକ ଏକ କଂପାନୀ କରି ୧୫୬୬ ମସିହାରେ ସମ୍ରାଟ ଜାହାଙ୍ଗୀରଙ୍କ ଠାରୁ ବାଣିଜ୍ୟ ବ୍ୟବସାୟ ପାଇଁ ଅନୁମତି ପତ୍ର ସଂଗ୍ରହ କଲେ । ଏହାପରେ କ୍ୟାପଟେନ୍ ହକିନ୍ସଙ୍କ ନେତୃତ୍ୱରେ ହେକ୍ଟର ନାମକ ଏକ ଜାହାଜ ଗୁଜରାଟର ସୁରତ ବନ୍ଦରରେ ୧୬୦୦ ମସିହା ଅଗଷ୍ଟ ମାସ ୨୪ ତାରିଖରେ ପହଞ୍ଚିଲା । ସେଠାରୁ ସେମାନେ ମୋଗଲ ରାଜଧାନୀ ଆଗ୍ରାରେ ଥିବା ସମ୍ରାଟଙ୍କ ପାଖକୁ ଯାଇଥିଲେ । ବାଣିଜ୍ୟ ବ୍ୟବସାୟ କରିବା ଆଳରେ ଇଂଲଣ୍ଡର ଜାତୀୟ ପତାକା ୟୁନିୟନ ଜ୍ୟାକ୍ ଭାରତରେ ନିଜର ଆସ୍ଥାନ ଜମେଇଲା । ଏଥିପାଇଁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଗାଇଥିଲେ -''ବଣିକେର ମାନଦଣ୍ଡ ଦିଖାଦେଲ ରାଜଦଣ୍ଡ ରୂପେ'' ।

## ସବୁଜ ଧ୍ୱଜା - ୧୮୫୭

ଇଷ୍ଟଇଣ୍ଡିଆ କଂପାନୀ 'ବିଭାଜନ ଓ ଶାସନ ନୀତି' ପ୍ରୟୋଗ କରି ଗୋଟିକ ପରେ ଗୋଟିଏ ରାଜ୍ୟ ଅଧିକାର କଲା । ଶେଷରେ ସାରା ଭାରତ ଇଂରେଜ ଅଧୀନକୁ ଚାଲିଗଲା । ଫଳରେ ଗୋରା ଶାସନ ବିରୋଧରେ ଭାରତର ଜନଜାଗରଣ ଦେଖାଦେଲା । ବିଦେଶୀ ଐତିହାସିକମାନେ ଏହାକୁ 'ସିପାହୀ ବିଦ୍ରୋହ' ଆଖ୍ୟାଦେଲେ । କିନ୍ତୁ ପ୍ରକୃତରେ ଏହାଥିଲା ଭାରତୀୟ ମାନଙ୍କର ସଂଗଠିତ ସଂଗ୍ରାମ । ଏହାର ନେତୃତ୍ୱ ନେଇଥିଲେ ଝାନ୍ସୀର ରାଣୀ ଲକ୍ଷ୍ମୀବାଇ, ତାନ୍ତିଆଟୋପେ, ନାନା ଫର୍ଣ୍ଣାବିସ୍, ଭାରତର ଶେଷ ମୋଗଲ ସମ୍ରାଟ ସିରାଜଉଦ୍ଦିନ ମହମ୍ମଦ ବାହାଦୁର ଶାହା ଜାଫର, ବୀର ସୁରେନ୍ଦ୍ର ସାଏ ଓ ଚନ୍ଦନ ହଜୁରୀ ପ୍ରମୁଖ ଭାରତମାତାର ବହୁବୀର ସନ୍ତାନ ।

ବାହାଦୁର ଶାହା ଜାଫରଙ୍କ ନେତୃତ୍ୱରେ ଏହି ବିଦ୍ରୋହ ୧୮୫୭ ମସିହା ମେ ମାସ ୩୧ ତାରିଖରୁ ଆରମ୍ଭ ହେବାକୁ ସ୍ଥିର ହୋଇଥିଲା । କିନ୍ତୁ ଏହାର ଦୁଇଦିନ ପୂର୍ବରୁ ଅର୍ଥାତ୍ ମେ ମାସ ୨୯ ତାରିଖରେ ମିରଟ ଠାରେ ଦେଶପ୍ରେମୀ ମଙ୍ଗଳ ପାଣ୍ଡେ ବିଦ୍ରୋହ କରିଦେଲେ । ଫଳରେ ସିପାହୀ ବିଦ୍ରୋହ ହୁଚ୍ ହୁଚ୍ କରି ବ୍ୟାପିଗଲା । ସିପାହୀ ମାନେ ଦିଲ୍ଲୀ ଲାଲକିଲ୍ଲା ଅଧିକାର କରି ବାହାଦୁର ଶାହା ଜାଫରଙ୍କୁ ୩୧ଥର ତୋପ

ସଲାମ ଦେଇ ତାଙ୍କୁ 'ଶାହେନ୍‌ଶା-ଇ-ହିନ୍ଦୁସ୍ଥାନ' ଘୋଷଣା କଲେ । ଅବଶ୍ୟ ଏହି ବିଦ୍ରୋହ ଗୋଟିଏ ବର୍ଷ ପରେ ଅସ୍ତମିତ ହୋଇଯାଇଥିଲା । ଏହି ବିଦ୍ରୋହ ଯେ ଭାରତୀୟମାନଙ୍କ ମନରେ ଜାତୀୟ ଆନ୍ଦୋଳନର ସୂତ୍ରପାତ କରିଥିଲା ଏହା ନିଶ୍ଚିତ ଭାବରେ କୁହାଯିବ ।



ବାହାଦୁର ଶାହା ଜାଫରଙ୍କ
ଉଦୟମାନ ସୂର୍ଯ୍ୟଥାଇ ବିଦ୍ରୋହ ପତାକା

ଉକ୍ତ ଆନ୍ଦୋଳନରେ ଇଂରେଜ ସୈନ୍ୟ ଇଂଲଣ୍ଡର ଜାତୀୟ ପତାକା ୟୁନିଅନ ଜ୍ୟାକ୍ ଉତ୍ତୋଳନ କରିଥିଲେ । ଭାରତୀୟ ସିପାହୀମାନେ ଉଦୀୟମାନ ସୂର୍ଯ୍ୟଚିତ୍ର ସମ୍ମିଳିତ ଏକ ସବୁଜରଙ୍ଗର ପତାକା ବ୍ୟବହାର କରିଥିଲେ । ସେମାନେ ଗାଇ ଉଠିଥିଲେ -

"ହିନ୍ଦୁ ମୁସଲମାନ ଶିଖ୍ ହମାରା
ଭାଇ ଭାଇ ପ୍ୟାରା
ଯେ ହେ ଝଣ୍ଡା ଆଜାଦୀକା
ଇସେ ସଲାମ୍ ହମାରା ।"



ଝାନ୍‌ସୀରାଣୀ ଲକ୍ଷ୍ମୀବାଇଙ୍କ
ହନୁମାନ ପତାକା

ଏହି ସବୁଜରଙ୍ଗର ଝଣ୍ଡା ସିପାହୀ ବିଦ୍ରୋହର ମୁଖ୍ୟ ଝଣ୍ଡା ହୋଇଥିଲେ ମଧ୍ୟ ବୀରାରାଣୀ ଲକ୍ଷ୍ମୀବାଇ ହନୁମାନ ଚିତ୍ର ଥାଇ ନାଲିରଙ୍ଗର ତିନିକୋଣିଆ ପତାକା ବ୍ୟବହାର କରୁଥିଲେ ।

ସିପାହୀ ବିଦ୍ରୋହ ପରେ ପରେ ଏକ ଜାତୀୟ ପତାକାର ଆବଶ୍ୟକତା ପଡ଼ିଲା । ସେଥିପାଇଁ ୧୮୮୩ ମସିହାରେ ଗିରିଷ ଚନ୍ଦ୍ର ବୋଷଙ୍କ ଦ୍ୱାରା "ଇଣ୍ଡିଆନ ନେସନାଲ ସୋସାଇଟୀ" ଗଠିତ ହୋଇଥିଲା । ଏହାପରେ ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ ମସିହା ଡିସେମ୍ବର ମାସ ୨୮ ତାରିଖରେ ଜନ୍ମନେଲା । ଏହା ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଆନ୍ଦୋଳନ ଚଳାଇଥିଲେ ମଧ୍ୟ ୧୯୩୧ ମସିହା ଅଗଷ୍ଟ ୬ ତାରିଖ ପର୍ଯ୍ୟନ୍ତ ନିଜର ଏକ ଜାତୀୟ ପତାକା ପ୍ରଚଳନ କରିପାରିନଥିଲା । ଇଂଲଣ୍ଡର ୟୁନିୟନ ଜ୍ୟାକ୍‌କୁ ଜାତୀୟ ପତାକାରୂପେ ଗ୍ରହଣ କରି ଆସିଥିଲା ।

ପୂର୍ବ ଅଧ୍ୟାୟରେ ଆମେ ବିଭିନ୍ନ ଦେଶରେ ପତାକା ବହୁ ପୁରାତନ କାଳରୁ କିପରି ଚଳିଆସିଛି ଉଲ୍ଲେଖ କରିଛେ । ଭାରତରେ ମଧ୍ୟ ବିଭିନ୍ନ ରାଜ୍ୟମାନଙ୍କର କିପରି ଭିନ୍ନ ଭିନ୍ନ ପତାକା ଥିଲା ତାହା ମଧ୍ୟ ପ୍ରକାଶ ହୋଇଛି । ତେବେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରାଷ୍ଟ୍ରପାଇଁ ସ୍ୱତନ୍ତ୍ର ପତାକାର ଆବଶ୍ୟକତା ଦେଖାଦେଲା । ସେଥିପାଇଁ ୧୯୦୪ ମସିହାରୁ ୧୯୩୦ ମସିହା ମଧ୍ୟରେ ଭଉଣୀ ନିବେଦିତାଙ୍କ ପତାକା, କୋଲକତା ପତାକା, ମାଡ଼ାମ କାମାଙ୍କ ପତାକା ଓ ତ୍ରିରଙ୍ଗା ପତାକା ପ୍ରଭୃତି ଜନ୍ମ ନେଲା ।

## ଭଉଣୀ ନିବେଦିତାଙ୍କ ପତାକା-୧୯୦୪

ଭଉଣୀ ନିବେଦିତା ଆୟର୍ଲାଣ୍ଡର ଜଣେ ମହିଳା । ଭାରତକୁ ଭଲପାଇ ଭାରତରେ ରହିଗଲେ । ସେ ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ୧୯୦୪ ମସିହାରେ ସେ ସାର୍ ଜଗଦୀଶ ଚନ୍ଦ୍ର ବୋଷ ଓ ରବୀନ୍ଦ୍ରନାଥ ଠାକୁରଙ୍କ ସହ ବୁଦ୍ଧଗୟା ଯାଇଥିଲେ ଏବଂ ସେଠାରେ 'ବଜ୍ରଚିହ୍ନ' ଦେଖି ବିଶେଷ ପ୍ରଭାବିତ ହୋଇଥିଲେ । ବଜ୍ର ହେଉଛି ଦେବତାମାନଙ୍କ ରାଜା ଇନ୍ଦ୍ରଙ୍କ ଅସ୍ତ୍ର । ପୁଣି ଏହା ବୁଦ୍ଧଦେବଙ୍କ ସନ୍ତକ । ବଜ୍ର ସହ ଶିବ ଓ ପାର୍ବତୀଙ୍କ ସମ୍ପର୍କ ରହିଛି । ଏ ସମସ୍ତ ବିଷୟ ବିଚାରକୁ ନେଇ ଭଉଣୀ ନିବେଦିତା ବଜ୍ରଚିହ୍ନ ପ୍ରତି ଆକୃଷ୍ଟ ହୋଇଥିଲେ । ଏଣୁ ତାଙ୍କ ପରିକଳ୍ପିତ ଜାତୀୟ ପତାକାର ମଧ୍ୟ ଭାଗରେ ହଳଦିଆ ରଙ୍ଗର ବଜ୍ରଚିହ୍ନ ଶୋଭା ପାଉଥିଲା । ଚାରିକୋଣିଆ ଲୋହିତ ରଙ୍ଗର ପତାକାର ବାମ ପାଖରେ 'ବନ୍ଦେ' ଓ ଡାହାଣ ପାଖରେ 'ମାତରମ୍' ଲେଖା ହୋଇଥିଲା । ପତାକାର ଚାରିପଟର ଧଡ଼ି ମାନଙ୍କରୁ ୧୦୮ଟି ଜ୍ୟୋତିଚିହ୍ନ ଅଙ୍କିତ ହୋଇଥିଲା । କିନ୍ତୁ ଏହି ପତାକା ସମସ୍ତଙ୍କ ଗ୍ରହଣୀୟ ହୋଇପାରିନଥିଲା ।



ଭଉଣୀ ନିବେଦିତାଙ୍କ ପତାକା

## ତ୍ରିରଙ୍ଗା ପତାକାର ଜନ୍ମ :

## କୋଲକତା ପତାକା - ୧୯୦୬

ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ ଡ଼ିସେମ୍ବର ୨୮ ତାରିଖରେ ସ୍ଥାପିତ ହୋଇଥିଲା । ଉମେଶ ଚନ୍ଦ୍ର ବାନାର୍ଜି ଥିଲେ ଏହାର ପ୍ରଥମ ସଭାପତି । କିନ୍ତୁ ସେତେବେଳେ କଂଗ୍ରେସର ସ୍ୱାଧୀନତା ପ୍ରାପ୍ତି ଲକ୍ଷ୍ୟ ନ ଥିଲା । ଏଣୁ ଜାତୀୟ ପତାକାର ଚିନ୍ତାଧାରା ମଧ୍ୟ

ନଥିଲା । କିନ୍ତୁ ଘଟଣାଚକ୍ରରେ ବହୁ ଭାରତୀୟ ଯୁବକ ବିଦେଶକୁ ଗଲେ, ବିଦେଶର ରୀତିନୀତି ସମ୍ପର୍କରେ ଜାଣିଲେ । ସେମାନଙ୍କ ଚଳଣି ପରାଧୀନ ଭାରତବାସୀଙ୍କୁ ପ୍ରଭାବିତ କଲା ।

ସମସାମୟିକ ଏକ ଘଟଣାବଳୀରୁ ତ୍ରିରଙ୍ଗା ପତାକା ଜନ୍ମନେଲା । ଘଟଣାଟି ଏହିପରି - ଏକଦା କୋଲକତା ବନ୍ଦରରୁ ଏକ ଜାପାନୀ ଜାହାଜ ଜାପାନ ଯାତ୍ରା ପାଇଁ ପ୍ରସ୍ତୁତ ହେଉଥାଏ । ଏହି ସମୟରେ ଜାହାଜର ଯାତ୍ରୀମାନେ ଡେକ୍ ଉପରେ ବିଚରଣ କରୁଥିଲେ । ଜାହାଜରେ ଜାପାନୀ ପତାକା ଫରଫର ଉଡୁଥାଏ । ଜାପାନୀ ପିଲାଟିଏ ଜଣେ ଭାରତୀୟ ଯୁବକଙ୍କୁ ତାଙ୍କ ଦେଶର ପତାକା ଦେଖାଇ କହିଲେ, "ଭାଇ, ଆପଣଙ୍କ ଦେଶର ପତାକା କ'ଣ ଆମ ଦେଶର ପତାକା ଭଳି ?" ଏଥିରେ ଭାରତୀୟ ଯୁବକ କି ଉତ୍ତର ଦେବେ ! ପରାଧୀନ ଭାରତର ପତାକା ଆସିବ କେଉଁଠୁ ? ଏହି ଘଟଣାରୁ ଜନ୍ମନେଲା ଦେଶପାଇଁ ସ୍ୱତନ୍ତ୍ର ପତାକାର ଭାବନା । ସେହି ଆମ ଭାରତୀୟ ଯୁବକ ଜଣକ ଥିଲେ ବିନାୟକ ଦାମୋଦର ସବରକର ।

ନୂତନ ପତାକାରେ ଥିଲା ତିନୋଟି ପଟି । ପତାକାର ଉପରେ ଥିଲା ସବୁଜ ପଟି । ଏଥିରେ ଆଠଟି ପଦ୍ମଫୁଲ ଥିଲା । ଆଠଟି ପଦ୍ମଫୁଲ ସେତେବେଳର ଆଠଟି ପ୍ରଦେଶର ସୂଚକ ଥିଲା । ମଝିରେ ଥିଲା ହଳଦିଆ ରଙ୍ଗର ପଟି । ଏଥିରେ ଦେବନାଗରୀ ଲିପିରେ 'ବନ୍ଦେ ମାତରମ୍' ଲେଖା ହୋଇଥିଲା । ସବା ତଳ ପଟିଟି ଲାଲ ରଙ୍ଗର । ଏହାର ବାମ ପାଖରେ ଧଳାରଙ୍ଗର ସୂର୍ଯ୍ୟଥିଲା । ଡାହାଣ ପାଖରେ ଅର୍ଦ୍ଧଚନ୍ଦ୍ରର ଛବି ଅଙ୍କିତ ହୋଇଥିଲା । କୋଲକତାର ପାର୍ଶିବାଗାନ ଚୌକ ବା ଗ୍ରୀନ ପାର୍କ -୧୯୦୬ ମସିହା ଅଗଷ୍ଟମାସ ୭ ତାରିଖ ଦିନ ବଙ୍ଗ ଭଙ୍ଗ ଆନ୍ଦୋଳନର ବାର୍ଷିକ ଉତ୍ସବ ଏଠାରେ ପାଳିତ ହେଲା । ହଜାର ହଜାର ଜନତାଙ୍କ ମଧ୍ୟରେ ସୁରେନ୍ଦ୍ର ନାଥ ବାନାର୍ଜି ଏହି ପତାକା ଉତ୍ତୋଳନ କରିଥିଲେ । ଏହି ସମୟରେ ୧୦୧ଟି ତୋପ ଫୁଟାଯାଇ ପତାକାକୁ ଅଭିନନ୍ଦନ ଦିଆଯାଇଥିଲା । ଜନତାର ବନ୍ଦେ ମାତରମ୍ ଧ୍ୱନିରେ ଗଗନ ପବନ ମୁଖରିତ ହେଲା ।



କୋଲକତା ପତାକା

ଜଣାଯାଏ କୋଲକତାର ଗ୍ରୀନ ପାର୍କରେ ଉଡ଼ିଥିବା ଏହି ପତାକା ଗଠନର ରୂପରେଖ ଦେଇଥିଲେ ବିପ୍ଳବୀ ବିନାୟକ ଦାମୋଦର ସବରକର ।

## ମାଡାମ କାମାଙ୍କ ପତାକା - ୧୯୦୭

ଏହାପରେ ସ୍ୱାଧୀନତା ପାଇଁ ବିପ୍ଳବର ବାଣୀ ଦେଶ ଓ ବିଦେଶରେ ପ୍ରତିଧ୍ୱନିତ ହୋଇଥିଲା । ସେତେବେଳେ ଫ୍ରାନସର ରାଜଧାନୀ ପ୍ୟାରିସରେ ଅନେକ ଭାରତୀୟ ବିପ୍ଳବୀ ଥିଲେ । ସେମାନଙ୍କ ମଧ୍ୟରେ ମାଡାମ ଭିକାଜୀ ରୁସ୍ତମ୍ କେ. ଆର. କାମାଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କୁ ଲୋକେ ମାଡାମ କାମା ବୋଲି ଜାଣୁଥିଲେ । ତାଙ୍କ ସହ ଆଉ ଜଣେ ବିପ୍ଳବୀ ଶ୍ୟାମଜୀ କୃଷ୍ଣବର୍ମା ଥିଲେ । ସେତେବେଳେ ଜର୍ମାନର ଷ୍ଟୁର୍ଟଗର୍ଟ ନାମକ ସ୍ଥାନରେ ଆନ୍ତର୍ଜାତିକ ସମାଜବାଦୀ ସମ୍ମେଳନର ଦ୍ୱିତୀୟ ଅଧିବେଶନ ହେବାକୁ ପ୍ରସ୍ତୁତି ଚାଲିଥାଏ । ଏଥିରେ ପୃଥିବୀର ବହୁ ଦେଶରୁ ସମାଜବାଦୀ ଚିନ୍ତାଧାରାକୁ ସମର୍ଥନ କରୁଥିବା ଯୁବକ ଯୁବତୀଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଏଥିରେ ମାଡାମ କାମା ଯୋଗଦେଇଥିଲେ । ସେ ଏଠାରେ ଭାରତୀୟ ବିପ୍ଳବୀମାନଙ୍କ ଗହଣରେ ଜାତୀୟ ପତାକା ଉଡ଼ାଇ ଥିଲେ । ଏହି ଦିନଟି ଥିଲା ୧୯୦୭ ମସିହା ଅଗଷ୍ଟ ମାସ ୨୨ ତାରିଖ । ଜାତୀୟ ପତାକାକୁ ବିଦେଶୀ ଭୂଇଁରେ ଉତ୍ତୋଳନ କରିବାରେ ମାଡାମ କାମା ଥିଲେ 'ପ୍ରଥମ ଭାରତୀୟ ମହିଳା' । ପତାକା ଉଡ଼ାଇ ସେ କହିଲେ, "ଏହି ପତାକା ଭାରତୀୟ ସ୍ୱାଧୀନତାର ପତାକା । ଦେଖ, ଏହା ଜନ୍ମଲାଭ କଲା । ଏହା ଭାରତୀୟ ଯୁବ ଶହୀଦମାନଙ୍କ ରକ୍ତରେ ଅନୁମୋଦିତ ହୋଇଛି ।"

ମାଡାମ କାମାଙ୍କ ପତାକା ଥିଲା ତ୍ରିରଙ୍ଗା ପତାକା । ଏହାର ଆଦ୍ୟ ଭାଗରେ ଥିଲା ସବୁଜ ରଙ୍ଗ । ଏଥିରେ ଆଠଟି ପଦ୍ମଫୁଲର ଚିତ୍ର ଅଙ୍କିତ ହୋଇଥିଲା ଯାହାକି ତତ୍କାଳୀନ ଆଠଟି ପ୍ରଦେଶର ସୂଚକ ଥିଲା । ମଧ୍ୟଭାଗର ପଟିଟି ହରିଦ୍ରା ରଙ୍ଗର । ଏଥିରେ ବନ୍ଦେ ମାତରମ୍ ଧଳାରଙ୍ଗରେ ଲେଖା ହୋଇଥିଲା । ଶେଷ ଭାଗଟି ଲାଲ ରଙ୍ଗର । ଏହାର ବାମ ପାଖରେ ଉଦୀୟମାନ ସୂର୍ଯ୍ୟ ଓ ଡ଼ାହାଣ ପାଖରେ ଅର୍ଦ୍ଧ ଚନ୍ଦ୍ର ଅଙ୍କିତ ହୋଇଥିଲା । ଏହି ଜାତୀୟ ପତାକା କୋଲକତା ପାର୍ଶିବାଗାନ ଜାତୀୟ ପତାକାର ଅନୁରୂପ ଥିଲା ।


ମାଡାମ କାମାଙ୍କ ପତାକା

## ରୈଖିକ ପତାକା(ହୋମ୍‌ରୁଲ ଲିଗ୍ ପତାକା)- ୧୯୧୭

ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ କହୁଥିଲେ, "ସ୍ୱରାଜ୍ୟ ମାନବର ଜନ୍ମଗତ ଅଧିକାର" । ସେ କଂଗ୍ରେସକୁ ନିଜସ୍ୱ ସ୍ୱରାଜ୍ୟ ମନ୍ତ୍ରରେ ଅଭିମନ୍ତ୍ରିତ କରିଥିଲେ । ଏହି ଲକ୍ଷ୍ୟରେ ୧୯୧୭ ମସିହାରେ ସେ 'ହୋମ୍‌ରୁଲ ଫର ଇଣ୍ଡିଆ ଲିଗ୍' ସଂସ୍ଥା ଗଠନ କଲେ । ଡଃ ଆନ୍ନିବେଶାନ୍ତ ଓ ତିଳକଙ୍କ ନେତୃତ୍ୱରେ ହୋମ୍‌ରୁଲ ଲିଗ୍ କାର୍ଯ୍ୟକଲା । ଏଥିରେ ରାଷ୍ଟ୍ରପାଇଁ ଏକ ରୈଖିକ ପତାକା ସ୍ଥିର ହେଲା । ଡଃ ଆନ୍ନିବେଶାନ୍ତ ଏହି ରୈଖିକ ପତାକା ୧୯୧୭ ମସିହା ଜୁଲାଇ ମାସରେ କୋଇମ୍ବାଟୁର ଠାରେ ଉତ୍ତୋଳନ କରିଥିଲେ । ଏହି ପତାକା ଭାରତର ବିଭିନ୍ନ ସ୍ଥାନରେ ଉତ୍ତୋଳିତ ହୋଇଥିଲା । ୧୯୧୭ ମସିହା ଡିସେମ୍ବର ୨୬ ତାରିଖରେ କୋଲକତାରେ କଂଗ୍ରେସ ଅଧିବେଶନ ଡଃ ଆନ୍ନିବେଶାନ୍ତଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେ ସେଠାରେ ମଧ୍ୟ ଏହି ରୈଖିକ ପତାକା ଉତ୍ତୋଳନ କରିଥିଲେ । ଏଭଳି ରୈଖିକ ପତାକାକୁ ଭାରତର ଜାତୀୟ ପତାକା ରୂପେ ସ୍ଥିର କରିବାରେ ପ୍ରେରଣା ଦେଉଥିଲେ ଡ଼ି.ଡ଼ି.ସାଠେ ଓ ଦ୍ୱିଜେନ୍ଦ୍ରନାଥ ଠାକୁର । ଏହି ରୈଖିକ ପତାକାରେ ୫ଟି ଲାଲ ଓ ୪ଟି ସବୁଜ ରେଖା ଏକାନ୍ତର ଭାବେ ସଜ୍ଜିତ ହୋଇଥିଲା । ପତାକାର ବାମ ପାର୍ଶ୍ୱର ଉପରି ଭାଗରେ ୟୁନିୟନ ଜ୍ୟାକ୍, ଦକ୍ଷିଣ ଶୀର୍ଷରେ ଅର୍ଦ୍ଧଚନ୍ଦ୍ର ଓ ତାରକାର ଛବି ଏବଂ ନିମ୍ନଭାଗରେ ସପ୍ତର୍ଷି ମଣ୍ଡଳ ଧଳାରଙ୍ଗରେ ଚିତ୍ରିତ ହୋଇଥିଲା । ସେଥିମଧ୍ୟରୁ ୫ଟି ହିନ୍ଦୁ ବହୁଳ ପ୍ରଦେଶ ପାଇଁ ୫ଟି ଲାଲ ପଟି ଓ ୪ଟି ମୁସଲମାନ ବହୁଳ ପ୍ରଦେଶ ପାଇଁ ୪ଟି ସବୁଜ ପଟି ଥିଲା । ସେତେବେଳେ ଥିବା ୯ଟି ପ୍ରଦେଶ ହେଲା - ବମ୍ବେ ପ୍ରେସିଡେନ୍ସୀ, ମାନ୍ଦାଜ ପ୍ରେସିଡେନ୍ସୀ, ବିହାର - ଓଡ଼ିଶା, ବଙ୍ଗ, ଆସାମ, କେନ୍ଦ୍ର ପ୍ରଦେଶ, ଉତ୍ତର ପଶ୍ଚିମ ସୀମାନ୍ତ ରାଜ୍ୟ, ପଞ୍ଜାବ ଓ ବେଲୁଚିସ୍ଥାନ । ହୋମ୍‌ରୁଲ ଲିଗ୍‌ର ଏହି ପତାକାର ବାମ ପାର୍ଶ୍ୱର ଉପରିଭାଗରେ ସ୍ଥାନ ପାଇଥିବା ୟୁନିୟନ ଜ୍ୟାକ୍‌ରୁ ସୂଚନା ମିଳୁଥିଲା ଯେ ଭାରତ ବ୍ରିଟିଶ୍ ସାମ୍ରାଜ୍ୟବାଦ ଅଧୀନରେ ରହି ସ୍ୱାୟତ୍ତଶାସନ ଦାବି କରେ । ହୋମ୍‌ରୁଲ ଲିଗ୍ ଆନ୍ଦୋଳନ କରୁ ନଥିଲା କି ପୂର୍ଣ୍ଣ ସ୍ୱାଧୀନତା ଦାବି କରୁନଥିଲା । ଫଳରେ ଜାତୀୟ କଂଗ୍ରେସ ଦ୍ୱାରା ଏହି ପତାକା ଗ୍ରହଣୀୟ ହୋଇନଥିଲା ।


ହୋମ ରୁଲ ଲିଗ୍‌ର ରୈଖିକ ପତାକା

## ତ୍ରିରଙ୍ଗା ପତାକା-୧୯୨୧

ପ୍ରଥମ ବିଶ୍ୱଯୁଦ୍ଧ କାଳରେ ମହାତ୍ମା ଗାନ୍ଧୀ ଭାରତର ଜଣେ ପ୍ରମୁଖ ନେତା ଭାବେ ଉଭା ହେଲେ । ଦକ୍ଷିଣ ଆଫ୍ରିକାରେ ଉତ୍କଟ କଳାଗୋରା ଭେଦଭାବର ବିଲୋପ ପାଇଁ ସତ୍ୟ ଓ ଅହିଂସାର ଭିତ୍ତି ଉପରେ ପ୍ରତିଷ୍ଠିତ ସତ୍ୟାଗ୍ରହର ସଫଳ ପ୍ରୟୋଗ କରି ସେ ସ୍ୱଦେଶ ଫେରିଥାନ୍ତି । ଗାନ୍ଧିଜୀଙ୍କ ଆହ୍ୱାନରେ ୧୯୧୯ ଏପ୍ରିଲ ୧୩ ତାରିଖ ପବିତ୍ର ମହାବିଷୁବ ସଂକ୍ରାନ୍ତିରେ ଆକୁମାରି ହିମାଚଳ ପ୍ରତିବାଦ ଦିବସ ପାଳିତ ହେଲା । ଅମୃତସରସ୍ଥିତ ଜାଲିଆନାୱାଲାବାଗ୍ ଠାରେ ଜନପ୍ରିୟ ନେତା ଲାଲା ହଂସରାଜଙ୍କ ନେତୃତ୍ୱରେ କୋଡ଼ିଏ ହଜାରରୁ ଅଧିକ ଆବାଳ ବୃଦ୍ଧ ବନିତା ଏକତ୍ରିତ ହୋଇଥାନ୍ତି । ସେଦିନ ପଞ୍ଜାବର ଗଭର୍ଣ୍ଣର ମାଇକେଲ୍ ଓଡ଼ୱାୟାରଙ୍କ ନିର୍ଦ୍ଦେଶରେ ଜେନେରାଲ ଡାୟାରଙ୍କ ଦ୍ୱାରା ନିଷ୍ଠୁରଭାବେ ହତ୍ୟା କରାଗଲା । ତାହା ସ୍ୱାଧୀନତା ସଂଗ୍ରାମ ଇତିହାସରେ 'ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ' ନାମରେ ଅଭିହିତ । ଏହି ପରିପ୍ରେକ୍ଷୀରେ ସ୍ୱାଧୀନତା ସଂଗ୍ରାମକୁ ଏକ ବିଧିବଦ୍ଧ ଯୋଜନାଭୁକ୍ତ କରିବା ପାଇଁ ସ୍ଥିର ହେଲା । ମହାତ୍ମା ଗାନ୍ଧୀ ଦେଶବାସୀଙ୍କୁ ଅସହଯୋଗ ଆନ୍ଦୋଳନ ପାଇଁ ଡାକରା ଦେଲେ । ଉତ୍ସାହ, ଉଦ୍ଦୀପନାର ଏକ ସ୍ରୋତ ସମଗ୍ର ଭାରତବର୍ଷରେ ପ୍ରବାହିତ ହେଲା । ଦେଶକୁ ପରାଧୀନତାର ବେଡ଼ିରୁ ମୁକ୍ତ କରିବା ପାଇଁ ଦେଶବାସୀ ଶପଥ ନେଲେ । ଏହି ସମୟରେ ଓଡ଼ିଶାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଅସହଯୋଗର ବାର୍ତ୍ତା ପ୍ରଚାରକଲେ । ଓଡ଼ିଶାବାସୀ ମଧ ଜାତୀୟ ପତାକା ପ୍ରତି ଆଗ୍ରହୀ ହେଲେ । ଜାତୀୟ କବି ବାଞ୍ଛାନିଧି ମହାନ୍ତି ପତାକାର ବନ୍ଦନା କରି ଲେଖିଥିଲେ -

"ଉଡ଼ିଛୁ ଉଡୁଛୁ ଉଡୁଥିବୁ ପରା ଯାବତ ଏ ଦେଶ ଧରିଥିବ ଧରା
ଯାବତ ଜାତିର ଜଣିଏ ପରାଣେ ଥିବୁତୁ ରାଜିବୁ ଗଗନ ଛୁଇଁରେ ।"

ଆନ୍ଧ୍ରର ବେଜୱାଡ଼ା (ବିଜୟୱାଡ଼ା) ଠାରେ ୧୯୨୧ ମସିହାରେ ସର୍ବଭାରତୀୟ କଂଗ୍ରେସ କମିଟିର ଏକ ଅଧିବେଶନ ବସିଥାଏ । ଏଠାରେ ଆନ୍ଧ୍ରର ଜଣେ ଯୁବକ ନାଲି ଓ ନୀଳରଙ୍ଗର ଏକ ପତାକା ଗାନ୍ଧିଜୀଙ୍କୁ ପ୍ରଦର୍ଶନ କରି ଏହା ଜାତୀୟ ପତାକା ରୂପେ ଗ୍ରହଣ କରିବାକୁ ପ୍ରସ୍ତାବ ଦେଇଥିଲେ । ଏହି ଦୁଇଟି ରଙ୍ଗ ଦୁଇ ମୁଖ୍ୟ ସମ୍ପ୍ରଦାୟର ସୂଚକ ହେବ ବୋଲି ସେ ଦର୍ଶାଇଥିଲେ । କିନ୍ତୁ ଗାନ୍ଧିଜୀ ଶ୍ୱେତରଙ୍ଗର ପ୍ରସ୍ତ ଅନ୍ୟ ଏକ ସମ୍ପ୍ରଦାୟ ପାଇଁ ଯୋଡ଼ିବାକୁ ପ୍ରସ୍ତାବ ଦେଇଥିଲେ । ମହାତ୍ମା ଗାନ୍ଧୀଙ୍କର ପରିକଳ୍ପନାକୁ ରୂପ ଦେବା ପାଇଁ ମସଲିପଟ୍ଟନମ୍ ଜାତୀୟ ମହାବିଦ୍ୟାଳୟର ଅଧ୍ୟାପକ ପିଙ୍ଗଲେ ଭେଙ୍କୟା ଜାତୀୟ ପତାକାର ରୂପରେଖ ବର୍ଣ୍ଣନା କରି ପୁସ୍ତକଟିଏ ପ୍ରକାଶ କଲେ । ପରବର୍ତ୍ତୀ ପର୍ଯ୍ୟାୟରେ ବିଜୟୱାଡ଼ା କଂଗ୍ରେସ ବୈଠକରେ ଗଭୀର ଆଲୋଚନା ଓ



ପିଙ୍ଗଳେ ଭେଙ୍କୟାଙ୍କ ତ୍ରିରଙ୍ଗୀ ପତାକା

ପର୍ଯ୍ୟାଲୋଚନା ପରେ ଜାତୀୟ ପତାକାରୂପେ ଏକ ତ୍ରିରଙ୍ଗା ଝଣ୍ଡା ପ୍ରସ୍ତୁତ ହେଲା । ଲାଲା ହଂସରାଜ ଚରଖାର ପୂର୍ଣ୍ଣାବୟବ ଚିତ୍ରକୁ ଜାତୀୟ ପତାକାର ବକ୍ଷଦେଶରେ ସ୍ଥାନ ଦେବାକୁ ପ୍ରସ୍ତାବ ଦେଲେ । ନିର୍ବିବାଦରେ ଏହା ଗୃହୀତ ହେଲା ।

୧୯୨୨ ମସିହାରେ ଜବଲପୁର ମ୍ୟୁନିସିପାଲିଟି ପଣ୍ଡିତ ମୋତିଲାଲ ନେହେରୁଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଯାଇ ତ୍ରିରଙ୍ଗା ଜାତୀୟ ପତାକା ଉତ୍ତୋଳନ କଲେ ।

ପତାକାକୁ ନେଇ ଭାରତର ସ୍ୱାଧୀନତା ସଂଗ୍ରାମ ଅନେକ ଉତ୍‌ଥାନ ପତନ ଦେଇ ଗତି କରିଛି । ପତାକା ଉପରେ ଅନେକ ଦେଶାତ୍ମବୋଧକ ସଙ୍ଗୀତ ରଚିତ ହୋଇଛି । ଉତ୍ତର ପ୍ରଦେଶର ଶ୍ୟାମଲାଲ ଗୁପ୍ତା (ପାର୍ଷଦ) ଜଣେ ଜାତୀୟବାଦୀ କବି । ସେ 'ଝଣ୍ଡା ଉଁଚା ରହେ ହମାରା' ସଂଗୀତ ରଚନା କଲେ । ୧୯୨୪ ମସିହାରେ ବେଲଗମ୍ ଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଜାତୀୟ ପତାକା ସହ ଝଣ୍ଡା ଉଁଚା ରହେ ହମାରା ସଙ୍ଗୀତ ଆବୃତ୍ତି କରାଯାଇଥିଲା । ଏହା ପଣ୍ଡିତ ଜବାହରଲାଲ ନେହେରୁ, ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ ଓ କୋକିଳ କଣ୍ଠୀ ସରୋଜିନୀ ନାଇଡୁଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ପତାକା ଉତ୍ତୋଳନର ମର୍ଯ୍ୟାଦା ବୃଦ୍ଧି ପାଇଁ ଏହି ସଙ୍ଗୀତକୁ 'ଧ୍ୱଜ ବନ୍ଦନା' କୁହାଗଲା । ଏହି ସଙ୍ଗୀତ ଜନସାଧାରଣଙ୍କ ମନରେ ଅପୂର୍ବ ଶିହରଣ ସୃଷ୍ଟି କରୁଥିଲା ।

### ଝଣ୍ଡା ଉଁଚା ରହେ ହମାରା

ବିଜୟୀ ବିଶ୍ୱ ତ୍ରିରଙ୍ଗ ପ୍ୟାରା ।
ଝଣ୍ଡା ଉଁଚା ରହେ ହମାରା ।।

ସଦାଶକ୍ତି ବରସାନେ ବାଲା । ପ୍ରେମ ସୁଧା ସରସାନେ ବାଲା ।
ବୀରୋଁ କୋ ହରଷାନେ ବାଲା । ମାତୃଭୂମି କୋ ତନମନ ସାରା ।।

ଝଣ୍ଡା ................. ।।

ସ୍ୱତନ୍ତ୍ରତା କେ ଭୀଷଣ ରଣ ମେଁ ।
ଲଖକର ଯୋଶ୍ ବଢ଼େ କ୍ଷଣ ମେଁ ।।

କାଁପେ ଶତ୍ରୁ ଦେଖ୍‌କର ମନ ମେଁ ।
ମିଟ୍ ଜାଏ ଭୟ ସଂକଟ ସାରା ।।

ଝଣ୍ଡା ................... ।।

ଇସ୍ ଝଣ୍ଡେ କେ ନୀଚେ ନିର୍ଭୟ । ଲେଁ ସ୍ୱରାଜ୍ୟ ଯହ ଅବିଚଳ ନିଶ୍ଚୟ ।
ବୋଲୋ ଭାରତ ମାତା କୀ ଜୟ । ସ୍ୱତନ୍ତ୍ରତା ହି ଧେୟ ହମାରା ।।

ଝଣ୍ଡା ...................... ।।

ଆଓ ପ୍ୟାରେ ବୀରୋଁ ଆଓ ।
ଦେଶ ଧର୍ମ ପର ବଲୀ ବଲୀ ଯାଓ ।।
ଏକ ସାଥ ସବ ମିଲକର ଗାଓ ।
ପ୍ୟାରା ଭାରତ ଦେଶ ହମାରା ।

ଝଣ୍ଡା ...................... ।।

ଇସ୍‌କୀ ଶାନ ନ ଜାନେ ପାଏ । ଚାହେ ଜାନ ଭଲେ ହି ଜାଏ ।
ବିଶ୍ୱ ବିଜୟ କରକେ ଦିଖଲାଏଁ । ତବ ହୋବେ ପ୍ରାଣ ପୂର୍ଣ୍ଣ ହମାରା ।

ଝଣ୍ଡା ...................... ।।

ବିଜୟୀ ବିଶ୍ୱ ତ୍ରିରଙ୍ଗା ପ୍ୟାରା ।
ଝଣ୍ଡା ଉଁଚା ରହେ ହମାରା ।।

ଜାତୀୟ ପତାକା ଉତ୍ତୋଳନ ସହିତ ଧ୍ୱଜ ବନ୍ଦନା ଗାନ କରାଯିବାରୁ କ୍ରମଶଃ ଜାତୀୟ ପତାକାର ମହତ୍ତ୍ୱ ଅଧିକରୁ ଅଧିକ ବୃଦ୍ଧି ପାଇଲା । ଜାତୀୟ ପତାକାକୁ ନିଜର ପ୍ରାଣ ବିନିମୟରେ ରକ୍ଷା କରିବା ପାଇଁ ସମସ୍ତେ ଆଗଭର ହେଲେ । ସେଥିପାଇଁ ଚକ୍ର ବ୍ୟୁହାକାର ଗୀତ ପ୍ରସ୍ତୁତି, ସ୍ୱୟଂ ସେବକ ତାଲିମ, ପତାକା ବନ୍ଦନାର ବିଧିବିଧାନ ଇତ୍ୟାଦିର ବ୍ୟବସ୍ଥା କରାଗଲା । ଏ ଲକ୍ଷ୍ୟରେ କଂଗ୍ରେସର 'ହିନ୍ଦୁସ୍ତାନୀ ସେବାଦଳ' ଶାଖା ସୃଷ୍ଟି ହେଲା । ଫଳରେ ଜାତୀୟ ପତାକା ଓ ଧ୍ୱଜ ବନ୍ଦନା ଜନମାନସରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା ।

## ଜାତୀୟ ପତାକା - ୧୯୩୧

ଜାତୀୟ ପତାକାର ପ୍ରଭାବ ଦିନକୁ ଦିନ ବୃଦ୍ଧି ପାଇଲା । ଏଥିରେ ଇଂରେଜ ସରକାର ବିଚଳିତ ହୋଇ ପଡ଼ିଲେ । ଇଂରେଜ ସରକାର ସର୍ବଦା ବିଭାଜନ ଓ ଶାସନ ନୀତି ପ୍ରୟୋଗ କରନ୍ତି । ଏ କ୍ଷେତ୍ରରେ ମଧ୍ୟ ସେହି ନୀତି ଅନୁସରଣ କଲେ । ଜାତୀୟ ପତାକାର ବହୁଳ ବ୍ୟବହାରକୁ ଖର୍ବ କରିବା ପାଇଁ ଶିଖ୍ ସମାଜକୁ ଆୟୁଧ କଲେ । ତ୍ରିରଙ୍ଗ ପତାକାର ତିନୋଟି ରଙ୍ଗ । ଏହି ତିନୋଟି ରଙ୍ଗ ହିନ୍ଦୁ,ମୁସଲମାନ ଓ ଅନ୍ୟାନ୍ୟ ସମ୍ପ୍ରଦାୟ ପାଇଁ ଉଦ୍ଦିଷ୍ଟ ଥିଲା । ଏଥିରେ ଶିଖ୍ ସମାଜ ତାଙ୍କ ପାଇଁ ଆଉ ଏକ ରଙ୍ଗ ଯୋଡ଼ିବାକୁ ଦାବି କଲେ । ଏହି ଦାବି ମାନିଥିଲେ ପତାକା ତିନି ରଙ୍ଗ ପରିବର୍ତ୍ତେ ଚାରି ରଙ୍ଗ ହୋଇଥାନ୍ତା । ଏଥିରେ ମହାତ୍ମା ଗାନ୍ଧୀ ରାଜି ହେଲେ ନାହିଁ । ୧୯୩୧ (ଏପ୍ରିଲ ୧) କରାଚୀ କଂଗ୍ରେସ ଅଧିବେଶନରେ ଗୋଟିଏ ପତାକା କମିଟି ଗଠିତ ହେଲା । ଏହାପରେ ମଇ ମାସ ବମ୍ବେ କଂଗ୍ରେସ ଅଧିବେଶନରେ ଘୋଷିତ ହେଲା ଯେ "ପତାକାର ରଙ୍ଗ ବିଭିନ୍ନ ସଂପ୍ରଦାୟର ସୂଚକ ହେଉଥିବାରୁ ରଙ୍ଗ କେବଳ ବିଭିନ୍ନ ଗୁଣର ପ୍ରତୀକ ହେବ ଏବଂ ଏଥିରେ ସାଂପ୍ରଦାୟିକ ଦୃଷ୍ଟିଭଙ୍ଗୀ ସ୍ଥାନ ପାଇବ ନାହିଁ" ।

ବହୁକାଳରୁ କେଶରୀ ରଙ୍ଗ ହେଉଛି ଜାତୀୟ ପ୍ରତିଷ୍ଠାର ପରିଚୟ ଚିହ୍ନ । ଛତ୍ରପତି ଶିବାଜୀ କେଶରୀ ରଙ୍ଗର ପତାକା ବ୍ୟବହାର କରୁଥିଲେ । ଅତୀତରେ ରାଜପୁତ ବୀରମାନେ ଯୁଦ୍ଧକ୍ଷେତ୍ରକୁ ଯିବାବେଳେ କେଶରୀ ରଙ୍ଗର ପୋଷାକ ପରିଧାନ କରୁଥିଲେ । ସାଧୁସନ୍ନ୍ୟାସୀମାନଙ୍କର ପୋଷାକ ମଧ୍ୟ କେଶରୀ ରଙ୍ଗର ଅଟେ । ଏହି ରଙ୍ଗ ବୀରତ୍ୱ ଓ ତ୍ୟାଗର ପ୍ରତୀକ ଅଟେ। କେବଳ ଏହି ରଙ୍ଗ ହିଁ ସାମୂହିକ ଭାବେ ଭାରତୀୟମାନଙ୍କ ପାଇଁ ଗ୍ରହଣଯୋଗ୍ୟ ରଙ୍ଗ । ପତାକା କମିଟି କେବଳ କେଶରୀ ରଙ୍ଗର ପତାକା ଓ ତହିଁରେ ଚରଖା ଚିହ୍ନ ଅଙ୍କିତ କରିବା ସିଦ୍ଧାନ୍ତରେ ଉପନୀତ ହୋଇଥିଲା । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ମତାମତକୁ ସମ୍ମାନଜଣାଇ ଜାତୀୟ ପତାକାରେ ତିନୋଟି ରଙ୍ଗ ଓ ଚରଖା ଚିହ୍ନ ରହିବା ପାଇଁ ସ୍ଥିର କଲା । ପୂର୍ବରୁ ମହାତ୍ମାଗାନ୍ଧୀ ପି. ଭେଙ୍କେୟାଙ୍କ ତିନିରଙ୍ଗ ବିଶିଷ୍ଟ ପତାକା ଓ ଚରଖା ଚିହ୍ନକୁ ଅନୁମୋଦନ କରିଥିଲେ । କହିବାକୁ ଗଲେ ପତାକା କମିଟି ରିପୋର୍ଟ ଗାନ୍ଧୀ ଗ୍ରହଣ ନକରିବାରୁ ତାହା କାର୍ଯ୍ୟକାରୀ ହେଲାନାହିଁ । ଏହି ତ୍ରିରଙ୍ଗା ପତାକାର ଆଦ୍ୟ କେଶରୀ, ମଧ୍ୟ ଭାଗରେ ଶ୍ୱେତ ଓ ପ୍ରାନ୍ତଭାଗରେ ସବୁଜରଙ୍ଗ ସ୍ଥାନ ପାଇଲା । ଶ୍ୱେତରଙ୍ଗରେ

ନୀଳରଙ୍ଗର ଚରଖାଚିହ୍ନ ରହିଲା ।

ପତାକାର ମଧ୍ୟବର୍ତ୍ତୀ ପଟିଟି ସମ୍ପୂର୍ଣ୍ଣ ଧଳା । ଧଳାରଙ୍ଗ ଶାନ୍ତି, ସତ୍ୟ ଓ ପବିତ୍ରତାର ପ୍ରତୀକ । ସତ୍ୟ ଆମର କଥା ଓ କାର୍ଯ୍ୟରେ ଏବଂ ପବିତ୍ରତା ଆମ ଚିନ୍ତାଧାରାରେ ଆବଶ୍ୟକ । ମହାତ୍ମାଗାନ୍ଧୀ ସତ୍ୟକୁ ଈଶ୍ୱରତୁଲ୍ୟ ଭକ୍ତି କରୁଥିଲେ । ଏହି ସଦ୍‌ଗୁଣ ଦୁଇଟିକୁ ସବୁଧର୍ମରେ ପ୍ରାଧାନ୍ୟ ଦିଆଯାଇଛି । ତେଣୁ ଧଳାରଙ୍ଗ ଆମକୁ ସତ୍ୟବାଦୀ, ପବିତ୍ର, ଶାନ୍ତିପ୍ରିୟ ତଥା ସରଳ ହେବାକୁ ପ୍ରେରିତ କରେ ।

ତ୍ରିରଙ୍ଗା ପତାକାର ଶେଷଭାଗରେ ଅଛି ଗାଢ଼ ସବୁଜ ରଙ୍ଗର ପଟି । ସବୁଜରଙ୍ଗ ଜୀବନ ଓ ସମୃଦ୍ଧିର ସୂଚକ । ପ୍ରକୃତି ଯେ ଆମ ଦେଶମାଟିକୁ ସ୍ୱର୍ଣ୍ଣପ୍ରସୂ କରି ଗଢ଼ିଛି, ସେ କଥା ଏହି ସବୁଜରଙ୍ଗ ଆମକୁ ମନେପକାଇ ଦିଏ । ଏହି ସୁଜଳା ସୁଫଳା ଶସ୍ୟଶ୍ୟାମଳା ମାଟିର ଉଚିତ ବିନିଯୋଗ କରିବା ପାଇଁ ଆମକୁ କଠିନ ପରିଶ୍ରମ କରି ଅଧିକ ଖାଦ୍ୟ ଉତ୍ପାଦନ କରିବାକୁ ହେବ । ଦାରିଦ୍ର୍ୟ ବିରୁଦ୍ଧରେ ଲଢ଼ି ସମୃଦ୍ଧି ଫେରାଇ ଆଣିବାର ଏହାହିଁ ପ୍ରକୃତ ଉପାୟ । ସବୁଜରଙ୍ଗ ମଧ୍ୟ ଶୌର୍ଯ୍ୟ ଓ ବିଶ୍ୱାସର ପ୍ରତୀକ । ୧୮୫୭ ମସିହାରେ ସଂଘଟିତ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ବିପ୍ଳବୀମାନେ ସବୁଜରଙ୍ଗର ପତାକା ବ୍ୟବହାର କରିଥିଲେ । ଏହି ମହାନ୍ ଐତିହ୍ୟକୁ ସମ୍ମାନ ଜଣାଇ ସ୍ୱାଧୀନତା ସଂଗ୍ରାମର ପରବର୍ତ୍ତୀ ପର୍ଯ୍ୟାୟରେ ଜାତୀୟ ପତାକାର ଯାହା କିଛି ପରିବର୍ତ୍ତନ ହେଲେ ମଧ୍ୟ ସେଥିରୁ ସବୁଜରଙ୍ଗକୁ ପରିହାର କରାଯାଇନାହିଁ ।

ଜାତୀୟ ପତାକାରେ ଥିବା ତିନୋଟି ରଙ୍ଗର ସମାବେଶ ଆମକୁ ଆମର ମହାନ୍ ଅତୀତ ବିଷୟରେ ସ୍ମରଣ କରାଇଦିଏ । ଏହାମଧ୍ୟ ଆମକୁ କଠିନ ପରିଶ୍ରମୀ ଓ ସତ୍ୟବାଦୀ ହୋଇ ଦେଶର ପ୍ରଗତି ହାସଲକରିବାକୁ ପ୍ରେରଣା ଦେଇଥାଏ । ଯେଉଁ ଭାରତ ବର୍ଷ ଭଗବାନଙ୍କୁ ତ୍ରିଗୁଣାତ୍ମକ ବୋଲି କଳ୍ପନା କରିଆସିଛି ଆଜି ସେହି ରାଷ୍ଟ୍ର ତ୍ରିରଙ୍ଗା ପତାକାକୁ ନିଜର ନିଶାଣ ରୂପେ ଉତ୍ତୋଳନ କରିପାରିଛି । ତ୍ରିରଙ୍ଗା ପତାକା ମାତ୍ର ତିନୋଟିରଙ୍ଗର ସମାହାର ନୁହେଁ, ଏହା ଭାରତୀୟ ମାନଙ୍କ ପାଇଁ ଗର୍ବ, ଗୌରବ ଓ ପ୍ରାଣ । ଭାରତବାସୀଙ୍କ ଜାତୀୟ ଏକତା ଓ ସଂହତିର ଚିହ୍ନ ।


ଭାରତୀୟ ଜାତୀୟ କଂଗ୍ରେସର
୧୯୩୧ ମସିହା ପତାକା

ପତାକାର ମଧ୍ୟଭାଗରେ ଚରଖାର ଅବସ୍ଥିତି । ଏହା ଜନସାଧାରଣଙ୍କ ଆଶା ଓ ଭରସାର ମୂର୍ତ୍ତିମନ୍ତ ପ୍ରତୀକ । ନୀଳ-କଳାରଙ୍ଗର କାଳିରେ

ଚରଖା ଚିତ୍ରିତ ହେବ । ପତାକାର ଦୈର୍ଘ୍ୟ-ପ୍ରସ୍ଥର ଅନୁପାତ ୩:୨ ଅର୍ଥାତ ଦୈର୍ଘ୍ୟ ୩ ହେଲେ ପ୍ରସ୍ଥ ୨ ହେବ । ଚରଖା ଚିହ୍ନ ସ୍ୱଦେଶୀ ଦ୍ରବ୍ୟର ପ୍ରସାର, ମୌଳିକଶିକ୍ଷା, ଗ୍ରାମୋଦ୍ୟୋଗ ଆଦି ବିକାଶର ପ୍ରତୀକ ଅଟେ । ଗାନ୍ଧିଜୀ କହୁଥିଲେ-"କୁଟି ଖାଅ, କାଟି ପିନ୍ଧ !" ଚରଖା ଏହି ସ୍ୱଦେଶୀ ନୀତିକୁ ବୁଝାଏ।

ଜାତୀୟ ପତାକା ୧୯୩୦ରୁ ୧୯୪୬ ମସିହା ପର୍ଯ୍ୟନ୍ତ ସମସ୍ତ ଆନ୍ଦୋଳନରେ ବ୍ୟବହୃତ ହୋଇଥିଲା । ୧୯୪୨ର ଐତିହାସିକ ଭାରତଛାଡ଼ ଆନ୍ଦୋଳନ ବେଳେ ଏହି ପତାକା ବହୁ ରୋମାଞ୍ଚକର ବୀରତ୍ୱପୂର୍ଣ୍ଣ ଘଟଣାର ସ୍ମାରକୀ ଥିଲା ।

୧୯୪୩ ମସିହା ମଇ ମାସରେ ସୁଭାଷ ଚନ୍ଦ୍ର ବୋଷ ଏକ ବୁଡ଼ାଜାହାଜ ଯୋଗେ ବିପଦସଙ୍କୁଳ ପ୍ରଶାନ୍ତ ମହାସାଗର ଦେଇ ଜାପାନର ରାଜଧାନୀ ଟୋକିଓରେ ପହଞ୍ଚିଲେ ଏବଂ ଜୁନ୍ ୨ ତାରିଖରେ ସିଙ୍ଗାପୁରରେ ପଦାର୍ପଣ କଲେ । ଜୁନ୍ ୫ ତାରିଖ ଦିନ 'ଆଜାଦ୍ ହିନ୍ଦ୍ ଫୌଜ' ଗଠିତ ହେଲା ଏବଂ ଜୁନ୍ ୯ ତାରିଖ ଦିନ ପଚାଶ ହଜାର ଭାରତୀୟଙ୍କର ଏକ ସମାବେଶରେ ବକ୍ତୃତା ଦେଇ ଆଜାଦ୍ ହିନ୍ଦ୍ ଫୌଜର ନେତୃତ୍ୱ ନେଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ।

ଜାପାନ ପାର୍ଲାମେଣ୍ଟରେ ପ୍ରଧାନମନ୍ତ୍ରୀ ତୋଜୋ ଘୋଷଣା କଲେ ଯେ ବଙ୍ଗୋପସାଗର ସ୍ଥିତ ଆଣ୍ଡାମାନ୍ ଓ ନିକୋବର ଦ୍ୱୀପପୁଞ୍ଜର ଶାସନଭାର ଆଜାଦ୍ ହିନ୍ଦ୍ ସରକାରଙ୍କ ହସ୍ତରେ ଅର୍ପଣ କରାଗଲା । ସ୍ୱାଧୀନ ଭାରତର ଏହା ପ୍ରାଦେଶିକ ସରକାର ରୂପେ ଘୋଷିତ ହେଲା । ଏହାକୁ 'ଅର୍ଜି-ହକୁମତ-ଇ-ଆଜାଦ୍ ହିନ୍ଦ୍' ବୋଲି କୁହାଗଲା । ଜାପାନ ସରକାର ଆଜାଦ୍ ହିନ୍ଦ୍ ଫୌଜକୁ ସ୍ୱାଧୀନ ଓ ସାର୍ବଭୌମ କ୍ଷମତା ଅର୍ପଣ କଲାପରେ ଏହାର ନିଜସ୍ୱ ସରକାର ଓ ମନ୍ତ୍ରିମଣ୍ଡଳ ଗଠନ କରାଗଲା । ଜାପାନ ପ୍ରଧାନମନ୍ତ୍ରୀ ଆଜାଦ୍ ହିନ୍ଦ୍ ସରକାରକୁ ସ୍ୱୀକାର କରିନେଲେ । ଏହାପରେ ଫିଲିପାଇନସ୍, ବ୍ରହ୍ମଦେଶ ବା ବର୍ମା (ଅଧୁନା ମ୍ୟାନମାର୍), ଥାଇଲାଣ୍ଡ, ମାଞ୍ଚୁରିଆ, ଜର୍ମାନୀ, ଇଟାଲୀ,ପ୍ରୋସିଆ ଓ ଆଇରିସ ସାଧାରଣତନ୍ତ୍ରମାନେ ନେତାଜୀଙ୍କ ସରକାରକୁ ସ୍ୱାଧୀନ ସରକାର ରୂପେ ସ୍ୱୀକାର କରିନେଲେ । ୧୯୪୩ ଡିସେମ୍ବର ୩୦ ତାରିଖ ଦିନ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆଣ୍ଡାମାନ ଓ ନିକୋବର ଦ୍ୱୀପରେ ତ୍ରିରଙ୍ଗା ଜାତୀୟ ପତାକା ଉତ୍ତୋଳନ କରିଥିଲେ । ସେତେବେଳେ ଆଜାଦ୍ ହିନ୍ଦ୍ ଫୌଜର ସ୍ୱତନ୍ତ୍ର ପତାକା ଥିଲେ ମଧ୍ୟ ନେତାଜୀ ଭାରତୀୟ ତ୍ରିରଙ୍ଗା ଜାତୀୟ ପତାକା ସେଲୁଲାର ଜେଲରେ ଉତ୍ତୋଳନକରି ଆଣ୍ଡାମାନକୁ 'ଶହୀଦ' ଓ ନିକୋବରକୁ 'ସ୍ୱରାଜ୍ୟ' ନାମ ଦେଇଥିଲେ ।

ଏଥର ଆଜାଦ୍ ହିନ୍ଦ୍ ସରକାର ପକ୍ଷରୁ ଇଂରେଜ ଶକ୍ତି ବିରୋଧରେ ଯୁଦ୍ଧ



ସୁଭାଷ ଚନ୍ଦ୍ର ବୋଷଙ୍କ ଆଜାଦ୍ ହିନ୍ଦ୍ ପତାକାକୁ ସୈନ୍ୟମାନେ ପ୍ରଦର୍ଶନ କରୁଛନ୍ତି

ଘୋଷଣା କରାଗଲା । ଆଜାଦ୍ ହିନ୍ଦ୍ ଫୌଜର ସ୍ଲୋଗାନ୍ ରହିଲା - 'ଦିଲ୍ଲୀ ଚଲୋ' । ଆଜାଦ୍ ହିନ୍ଦ୍ ଫୌଜର ସ୍ୱତନ୍ତ୍ର ଭାରତ ସରକାର କାର୍ଯ୍ୟାଳୟ ବର୍ମାର ରାଜଧାନୀ ରେଙ୍ଗୁନ୍‌ଠାରେ ୧୯୪୪ ଜାନୁୟାରୀ ୭ ତାରିଖରେ ସ୍ଥାପିତ ହେଲା । ଫୌଜର ଯୁଦ୍ଧ ଗୀତିକା ଥିଲା -

"କଦମ୍ କଦମ୍ ବଢ଼ାଏ ଯା, ଖୁସିକେ ଗୀତ ଗାୟେ ଯା'
ଯେ ଜିନ୍ଦେଗୀ ହୈ କୌମ୍‌କୀ ତୋ, କୌମ୍‌ପେ ଲୁଟାୟେ ଯା' ।
ତୁ ଶେର୍ ହୈ ହିନ୍ଦ୍ ଆଗେ ବଢ଼, ମରନେ ସେ ହରଗିଜ୍ ନା ଡର
ପଲକ ତଲକ ଉଠାକେ ସର୍, ଜୋରୋ ବତନ୍ ବଢ଼ାୟେ ଯା' ।
ତେରୀ ହିମ୍ମତ୍ ବଢ଼ତୀ ରହେ, ଖୁଦା ତେରୀ ସୁନ୍‌ତା ରହେ
ଯୋ ସାମ୍‌ନେ ତେରେ ଅଡ଼େ, ତୋ' ଖାକ୍‌ମେ ମିଲାୟେ ଯା' ।
ଚଲୋ ଦିଲ୍ଲୀ ପୁକାର୍‌କେ, କୌମି ନିଶାନ୍ ସମ୍ଭାଲ୍ କେ
ଲାଲକିଲ୍ଲେ ପେ ଗାଡ୍ କେ ଲହରାୟେ ଯା, ଲହରାୟେ ଯା' ।"

## ଜାତୀୟ ପତାକା - ୧୯୪୭

ଲର୍ଡ଼ ମାଉଣ୍ଟ ବେଟେନ୍‌ଙ୍କ ଯୋଜନା ଅନୁଯାୟୀ ଭାରତ ଓ ପାକିସ୍ଥାନ ଦୁଇଭାଗ ହେବା ପାଇଁ ଏକ ବିଲ୍ ବିଲାତ ପାର୍ଲାମେଣ୍ଟରେ ୧୯୪୭ ଜୁଲାଇ ୩ତାରିଖରେ ଆଗତ

ହେଲା । ଏଥିରେ ଭାରତୀୟ ନେତୃବର୍ଗ ଚଳଚଞ୍ଚଳ ହୋଇ ପଡ଼ିଲେ । ଯଥାଶୀଘ୍ର ଭାରତର ଜାତୀୟ ପତାକାର ପୂର୍ଣ୍ଣାଙ୍ଗ ରୂପରେଖ ଆବଶ୍ୟକ ହେଲା । ସେଥିପାଇଁ ଭାରତର ଶାସନ ବିଧାୟକ ସଭା ଏକ ପତାକା କମିଟି ଗଠନ କଲେ । ଏଥିରେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ସରୋଜିନୀ ନାଇଡୁ, କେ.ଏମ୍. ମୁନସୀ, ଡଃ. ବି.ଆର. ଆମ୍ବେଦକର, ସର୍ଦ୍ଦାର ପାନିକର, ସର୍ଦ୍ଦାର ଉଜ୍ଜ୍ୱଳ ସିଂହ, ମୌଲାନା ଆବୁଲ କାଲାମ୍ ଆଜାଦ୍, ଫ୍ରାଙ୍କ ଆଣ୍ଟୋନୀ ଓ ଜି.ଏନ୍.ମିତ୍ର ସଭ୍ୟ ରହିଲେ ।

ପତାକା କମିଟି ଜାତୀୟ ପତାକାର ରୂପରେଖ ନେଇ ଗଭୀରଭାବେ ଅନୁଧ୍ୟାନ କଲେ । ସେମାନେ ମତ ଦେଲେ ଯେ, ଯେଉଁ ପତାକାର ପ୍ରେରଣାଲାଭ କରି ଓ ଯେଉଁ ପତାକା ପାଇଁ ଭାରତବାସୀ ଅସୀମ ତ୍ୟାଗ ସ୍ୱୀକାର କରିଛନ୍ତି, ସେହି ପତାକାର କେଶରୀ, ଶ୍ୱେତ ଓ ସବୁଜରଙ୍ଗ ପୂର୍ବବତ୍ ରହିବ । ମଧ୍ୟଭାଗରେ ଥିବା ଚରଖାର ପୂର୍ଣ୍ଣାବୟବ ଚିତ୍ର ବଦଳରେ ଅଶୋକଚକ୍ର ସ୍ଥାନ ପାଇବ। କମିଟି ମତବ୍ୟକ୍ତ କଲେ ଯେ ଚରଖାଚିତ୍ରିତ ପତାକା ଉଡୁଥିବାବେଳେ ଚରଖାର ଚକ୍ରଟି ଦର୍ଶକଙ୍କୁ କେତେବେଳେ ବାମପଟେ ତ କେତେବେଳେ ଡାହାଣ ପଟେ ଦେଖାଯାଏ । ଏଣୁ ଏହା ବଦଳରେ ସତ୍ୟ ଓ ଅହିଂସାର ଅବତାର ଭଗବାନ ବୁଦ୍ଧଙ୍କ ମହନୀୟ ସ୍ମୃତି ସାରନାଥ ଠାରେ ଥିବା ଚକ୍ରକୁ ପତାକାର ମଧ୍ୟଭାଗରେ ଶୁକ୍ଳରଙ୍ଗ ମଧ୍ୟରେ ସ୍ଥାନିତ କରାଯାଉ । ସମ୍ରାଟ ଅଶୋକ ମହାତ୍ମା ବୁଦ୍ଧଙ୍କ ପ୍ରଥମ ବାଣୀର ସ୍ମାରକୀ ନିମନ୍ତେ ବାରାଣସୀ ନିକଟସ୍ଥ ସାରନାଥ ଠାରେଏକ ସ୍ତମ୍ଭ ନିର୍ମାଣ କରିଥିଲେ । ଏହା 'ଅଶୋକ ସ୍ତମ୍ଭ' ନାମରେ ପରିଚିତ । ଆମ ଜାତୀୟ ପତାକାରେ ସ୍ଥାନ ପାଇଥିବା ଏହି ଚକ୍ରଟି ଅଶୋକ ସ୍ତମ୍ଭର ଚୂଡ଼ାରୁ ଗୃହୀତ ହୋଇଛି । ଏହି ଚକ୍ରର ବ୍ୟାସ ଧଳା ପଟିର ଚଉଡ଼ା ସହ ସମାନ । ଏଥିରେ ୨୪ଟି ଅର ଅଛି । ଦିନ ଓ ରାତି ମିଶି ୨୪ ଘଣ୍ଟା । ଦିନ ପରେ ରାତି, ରାତି ପରେ ଦିନ ଯେପରି ସମୟର ଚକ ଗଡ଼ି ଚାଲିଛି । ଠିକ୍ ସେହିପରି ୨୪ଟି ଅର ବିଶିଷ୍ଟ ଏହି ଚକ୍ର ପ୍ରଗତି ପଥରେ ଗଡ଼ି ଚାଲିଛି । ଚକ୍ର ଅଗ୍ରଗତି ତଥା ପ୍ରଗତିର ସୂଚନା ଦିଏ । ଏହି ଚକ୍ରର ରଙ୍ଗ ଘନନୀଳ ଅଟେ । ସେଥିପାଇଁ ଗାନ୍ଧିଜୀ କହିଥିଲେ "ଜାତି ପତାକା ତିଆରି କରେ ଏବଂ ପତାକା ଜାତିକୁ ତିଆରି କରେ" ।

୧୯୪୭ ମସିହା ଜୁଲାଇ ୨୨ ତାରିଖରେ ପତାକା କମିଟିଙ୍କ ସୁପାରିସକୁ ନିର୍ବିବାଦରେ ଗ୍ରହଣ କରାଗଲା । ଏଥିରେ ସମାନ୍ତରାଳ ଓ ସମ ଆୟତନ ବିଶିଷ୍ଟ ଗାଢ଼ କେଶରୀ, ଶ୍ୱେତ ଓ ଗାଢ଼ ସବୁଜରଙ୍ଗର କ୍ରମାନ୍ୱୟ ସମାବେଶରେ ପ୍ରସ୍ତୁତ ତ୍ରିରଙ୍ଗା ଝଣ୍ଡା ଭାରତର ରାଷ୍ଟ୍ରୀୟ ନିଶାଣ ହେବା ପାଇଁ ସ୍ଥିର ହେଲା। ସାରନାଥ ଅଶୋକସ୍ତମ୍ଭର ସିଂହ ମୁଦ୍ରାରେ ଯେଉଁ ଚକ୍ର ଖୋଦିତ ହୋଇଛି ପତାକାର ଚକ୍ରର ରୂପ ଅବିକଳ ସେହିପରି

ହେବ । ଶ୍ୱେତପ୍ରସ୍ତର ପ୍ରସ୍ଥ ଓ ଚକ୍ରର ବ୍ୟାସ ସମାନ ରହିବ । ପତାକା ୩:୨ ଅନୁପାତ ବିଶିଷ୍ଟ ହୋଇ ଆୟତାକାର ହେବ । ଏହା ରେଶମ କିମ୍ବା ଖଦି କନାରେ ପ୍ରସ୍ତୁତ ହେବ ।

ପଣ୍ଡିତ ଜବାହରଲାଲ ନେହେରୁ ପତାକା କମିଟିର ଏହି ପ୍ରସ୍ତାବକୁ ଆଗତ କରି କହିଲେ-"ଆମ ତ୍ରିରଙ୍ଗା ପତାକା ଗୋଟିଏ ସାମ୍ରାଜ୍ୟ ବା ସାମ୍ରାଜ୍ୟ-ବାଦର ପତାକା ନୁହେଁ । ବରଂ ଏହା ହେଉଛି ସ୍ୱାଧୀନତାର ପତାକା, କେବଳ ଆମମାନଙ୍କ ପାଇଁ ନୁହେଁ ସମସ୍ତଙ୍କ ପାଇଁ ଯେଉଁମାନେ ଏହାକୁ ଦେଖିପାରୁଛନ୍ତି ।" ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ମତ ଥିଲା -"ପତାକାର କେଶରୀ ରଙ୍ଗ ତ୍ୟାଗର ତାତ୍ପର୍ଯ୍ୟକୁ ପ୍ରତିନିଧିତ୍ୱ କରୁଥିବା ବେଳେ ଧଳା ରଙ୍ଗ ସତ୍ୟ, ପବିତ୍ରତା ଏବଂ ସବୁଜ ରଙ୍ଗ ବିକାଶକୁ ସୂଚିତ କରିଥାଏ ।"


ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା

ପତାକା କମିଟିର ପ୍ରସ୍ତାବକୁ ସମର୍ଥନ କରି ସରୋଜିନୀ ନାଇଡୁ, ମୋହନ ସିଂ ମେହେଟା, ଡଃ ଏଚ. ସି. ମୁଖର୍ଜି, ଜୟପାଳ ସିଂ ଚୌଧୁରୀ,ଖଲିକୁଜ୍ଜାମନ, ଫ୍ରାଙ୍କ ଆନ୍ଥୋନୀ, ଜ୍ଞାନୀ ଗୁରୁମୁଖ ସିଂ, ଖାଣ୍ଡେକର ଓ ଓଡ଼ିଶାର ପ୍ରତିନିଧି ଲକ୍ଷ୍ମୀନାରାୟଣ ସାହୁ ପ୍ରମୁଖ ସ୍ୱ ସ୍ୱ ବକ୍ତବ୍ୟ ଉପସ୍ଥାପନ କରିବା ପରେ ପ୍ରସ୍ତାବଟି ସର୍ବସମ୍ମତି କ୍ରମେ ଗୃହୀତ ହେଲା । ବାପୁଜୀଙ୍କ ବଳିଷ୍ଠ ନେତୃତ୍ୱରେ ସ୍ୱଳ୍ପକାଳ ମଧ୍ୟରେ ଭାରତ ଦୁଇଶତ ବର୍ଷର ପରାଧୀନତାରୁ ମୁକ୍ତି ଲାଭ କରି ରାଷ୍ଟ୍ରୀୟ ଝଣ୍ଡା ଉତ୍ତୋଳନର ସୁଯୋଗ ଲାଭ କରିଥିବାରୁ ତାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରି ସଭା ଅନ୍ୟ ଏକ ପ୍ରସ୍ତାବ ଗ୍ରହଣ କଲେ ।

## ଲାଲକିଲ୍ଲାରେ ବିଜୟ ବୈଜୟନ୍ତୀ

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଭାରତବର୍ଷର ଇତିହାସରେଏକ ଅବିସ୍ମରଣୀୟ ଦିବସ । ସ୍ୱାଧୀନତାର ବିଜୟ ଭେରୀ ଉକ୍ତ ଦିନ ଆମେ ବଜାଇଲୁ । ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ରରେ ଏକ ବିଶେଷ ଉତ୍ସବରେ ବ୍ରିଟିଶ ସରକାରଙ୍କ ପ୍ରତିନିଧିଭାବେ ଭାରତର ବଡଲାଟ୍ ଲର୍ଡ ମାଉଣ୍ଟବେଟେନ୍ ଭାରତୀୟମାନଙ୍କୁ କ୍ଷମତା ହସ୍ତାନ୍ତର କଲେ ।

ପଣ୍ଡିତ ଜବାହରଲାଲ ନେହେରୁ ଭାରତର ସର୍ବସମ୍ମତ ପ୍ରତିନିଧିରୂପେ ସ୍ୱାଧୀନତାପ୍ରାପ୍ତି ସନନ୍ଦପତ୍ର ଗ୍ରହଣ କରି ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ ଏକ ଆବେଗଭରା ବକ୍ତୃତାରେ କହିଲେ, "ମଧ୍ୟରାତ୍ରରେ ବିଶ୍ୱବାସୀ ଯେତେବେଳେ ସୁପ୍ତ ସେତେବେଳେ ଭାରତ ସ୍ୱାଧୀନତାର ପୂଣ୍ୟପୀଠରେ ଚିର ଜାଗ୍ରତ ଲାଭ କରିଛି"। ଭାରତର ଶେଷ ସ୍ୱାଧୀନ ମୋଗଲ ସମ୍ରାଟ ବାହାଦୁର ଶାହା ଜାଫରଙ୍କୁ ପ୍ରଥମ ଜାତୀୟ ଜାଗରଣ ବେଳେ ୧୮୫୭ ଡିସେମ୍ବର ୧୯ ତାରିଖରେ ବିଦେଶୀ ସରକାର ଲାଲକିଲ୍ଲାରେ ବନ୍ଦୀକରି ରଖିଥିଲେ ଓ ପରେ ତାଙ୍କୁ ରେଙ୍ଗୁନ୍ ନିଆଯାଇଥିଲା । ତେଣୁ ଭାରତର ସ୍ୱାଧୀନତା ରବି ଲାଲକିଲ୍ଲାରେ ଅସ୍ତମିତ ହୋଇଯାଇଛି ଅନୁଭବ କରି ସଶସ୍ତ୍ର ବିପ୍ଳବ ଦ୍ୱାରା ଭାରତକୁ ଇଂରେଜ କବଳରୁ ମୁକ୍ତ କରିବା ଲକ୍ଷ୍ୟରେ ନେତାଜୀ ଆଜାଦ୍ ହିନ୍ଦ୍ ଫୌଜକୁ 'ଦିଲ୍ଲୀଚଲୋ' ନିର୍ଦ୍ଦେଶ ଦେଇଥିଲେ



ଲାଲକିଲ୍ଲାରେ ଜାତୀୟ ପତାକା

ଓ କହିଥିଲେ ଲାଲକିଲ୍ଲାରେ ହିଁ ପ୍ରଥମ ବିଜୟ ବୈଜୟନ୍ତୀ ଉତ୍ତୋଳନ କରାଯିବ । କିନ୍ତୁ ଏହି ସ୍ୱପ୍ନ ସାର୍ଥକ ହେଲା ୧୯୪୭ ଅଗଷ୍ଟ ୧୬ ତାରିଖ ଦିନ । ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ ଦିନ ସ୍ୱାଧୀନତା ପ୍ରାପ୍ତିର ଆନନ୍ଦ ଉଲ୍ଲାସରେ ଜନସାଧାରଣ ବିଭୋର ରହିଥିବାରୁ ବିଧି ପୂର୍ବକ ୧୬ ତାରିଖ ଦିନ ଲାଲକିଲ୍ଲାରେ ତ୍ରିରଙ୍ଗା ଝଣ୍ଡା ଉତ୍ତୋଳିତ ହେଲା । ଏହା ପରଠାରୁ ପ୍ରତ୍ୟେକ ବର୍ଷ ଅଗଷ୍ଟ ୧୫ ତାରିଖରେ ଝଣ୍ଡା ଉତ୍ତୋଳିତ ହୋଇ ସ୍ୱାଧୀନତା ଦିବସ ପାଳିତ ହୋଇ ଆସୁଛି ।

୧୬ ଅଗଷ୍ଟ, ୧୯୪୭ ମସିହାରେ ଦିଲ୍ଲୀଠାରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଇତିହାସ ପ୍ରସିଦ୍ଧ ଲାଲକିଲ୍ଲାରେ ଦୁର୍ଗପ୍ରାଚୀରରେ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ଏହି ଉତ୍ସବ ଉପଲକ୍ଷେ ନିମ୍ନଲିଖିତ ବିବରଣୀଟି ୧୯୪୭ ମସିହା ଅଗଷ୍ଟ ୧୭ ତାରିଖ 'ନେସନାଲ ହେରାଲଡ୍'ରୁ ସଂଗ୍ରହ କରାଯାଇ ଉପସ୍ଥାପନ କରାଗଲା -

"ପଣ୍ଡିତ ଜବାହରଲାଲ ନେହେରୁ ଭାରତ ସରକାରଙ୍କ ପ୍ରଧାନମନ୍ତ୍ରୀ ଆଜି ପ୍ରଭାତରେ ୮ ଘଣ୍ଟା ୩୦ ମିନିଟ୍‌ରେ ଲାଲ୍‌କିଲ୍ଲାଠାରେ ଜାତୀୟ ପତାକା ଉତ୍ତୋଳନ କଲେ । ଦୁଇଲକ୍ଷ ପଚାଶ ହଜାର ଦର୍ଶକ ଏହି ଉତ୍ସବରେ ଉପସ୍ଥିତ ଥିଲେ ।"

"ଭାରତର ସ୍ୱାଧୀନତାର ପ୍ରତୀକ ଏଇ ଜାତୀୟ ପତାକାକୁ ସମ୍ମାନ ପ୍ରଦର୍ଶନ କରିବା ପାଇଁ ଆଜି ଆପଣମାନେ ଏଠାରେ ସହସ୍ର ସହସ୍ର ସଂଖ୍ୟାରେ ସମବେତ ହୋଇଛନ୍ତି । କିନ୍ତୁ ସାରା ପୃଥିବୀର କୋଟି କୋଟି ଲୋକଙ୍କର ଦୃଷ୍ଟି ମଧ୍ୟ ଆଜି ଏହା ଉପରେ ରହିଛି ।"

ବିଶାଳ ଜନତାକୁ ସମ୍ବୋଧନ କରି ପଣ୍ଡିତ ଜବାହରଲାଲ୍ ନେହେରୁ ଏହା କହିଥିଲେ । ସେ ନିର୍ଦ୍ଧାରିତ ସମୟ ଅନୁଯାୟୀ ୮ ଘଣ୍ଟା ୧୦ ମିନିଟ୍ ସମୟରେ ଲାଲକିଲ୍ଲାଠାରେ ଉପସ୍ଥିତ ହୋଇଥିଲେ । ପ୍ରତିରକ୍ଷା ମନ୍ତ୍ରୀ ସର୍ଦ୍ଦାର ବଲଦେବ ସିଂହ, କମାଣ୍ଡର ମେଜର ଜେନେରାଲ କାରିଅପ୍ପା ତାଙ୍କୁ ପାଛୋଟି ନେଇଥିଲେ । ଲେଡି ମାଉଣ୍ଟ ବେଟେନ୍, ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ଡଃ ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ବହୁ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ତା'ପରେ ପ୍ରଧାନମନ୍ତ୍ରୀ ରୟାଲ ଇଣ୍ଡିଆନ ଏୟାର ଫୋର୍ସ, ଶିଖଇନ୍‌ଫାଣ୍ଟ୍ରି ଏବଂ ରୟାଲ ଇଣ୍ଡିଆନ ନେଭିର ଗାର୍ଡ଼ ଅଫ୍ ଅନର ପରିଦର୍ଶନ କରିଥିଲେ ।

"ଗତକାଲିଠାରୁ ଦିଲ୍ଲୀ ପାଇଁ, ଭାରତ ପାଇଁ ତଥା ଏହାର ସବୁ ଗ୍ରାମ ଓ ସହର ପାଇଁ ଏକ ନୂତନ ଯୁଗର ଶୁଭାରମ୍ଭ ହେଲା" । ସେ କହିଲେ "ବିଗତ ୨୭ ବର୍ଷ ଭିତରେ ଯାହା ସବୁ ଘଟିଯାଇଛି ଏଇ ପତାକା ତଳେ ଆମେ କିପରି ଲଢ଼ିଛୁ ଓ ତ୍ୟାଗ ସ୍ୱୀକାର କରିଛୁ ତାହା ଆପଣମାନେ ଜାଣନ୍ତି । ଆଜିର ବିଜୟ କେବଳ ମୋର ବା ଆପଣଙ୍କର ବିଜୟ ନୁହେଁ ବରଂ ଏହା ସାରା ଦେଶର ବିଜୟ ।"

"ଏହି ଦୁର୍ଗ ଅନେକ ଉତ୍‌ଥାନ ଓ ପତନ ଦେଖିଛି କିନ୍ତୁ ଆଜି ଆମେ ଆମର ଅଧିକାରକୁ ଗ୍ରହଣ କରିବାକୁ ଆସିଛୁ । ଭାରତୀୟ ସୈନ୍ୟବାହିନୀ ଆମ ଜାତିର ଗର୍ବର ଉତ୍ସ । ସେମାନେ କେବଳ ଭାରତର, ସେମାନେ କୌଣସି ବିଦେଶୀ ଶକ୍ତିର ଅଧୀନରେ ନାହାନ୍ତି । ସେମାନଙ୍କର କର୍ତ୍ତବ୍ୟ ହେଉଛି ଏଇ ଜାତି ତଥା ଜାତୀୟ ପତାକାର ସମ୍ମାନ ରକ୍ଷା କରିବା । ଆପଣମାନଙ୍କୁ ଆଜି ଏହି ପତାକାତଳେ ଶପଥ ନେବାକୁ ହେବ ଯେ ଆମେ ସମସ୍ତେ ଏକ ହୋଇ ରହିବା ଏବଂ ଆମର ସ୍ୱାଧୀନତା ଓ ସାମୂହିକ ବିକାଶକୁ ଆଗେଇ ନେବା । ପରିଶେଷରେ ଯଦିଓ ଆମକୁ ସ୍ୱାଧୀନତା ମିଳିଛି, ତଥାପି ଏହା ହେଉଛି ଆମ ଯାତ୍ରାର ଆରମ୍ଭ ମାତ୍ର ଆମକୁ ଆହୁରି ବହୁତ ଦୂର ଯିବାକୁ ଅଛି ।"

## ପତାକା ଆକାର

ବିଭିନ୍ନ ଉତ୍ଥାନ ପତନ ଦେଇ ଆମେ ଆମର ତ୍ରିରଙ୍ଗା ଜାତୀୟ ପତାକା ପାଇଛୁ । ଏହି ପତାକା ଗଠନ ନେଇ କିଛି ଧାରଣା ଅବତାରଣା କରୁଛି । ଏଥିରେ ପତାକାର ଆକାର ୨:୩ ହେବ । ପତାକା ୯ ପ୍ରକାରର ଆକାର ହୋଇ ପ୍ରସ୍ତୁତ ହୋଇ ପାରିବ । ପତାକା କୋଡ୍‌ରେ ଏସବୁ ଉଲ୍ଲେଖ ଅଛି । ତାହା ନିମ୍ନମତେ ସ୍ଥାନିତ ହେଲା :-

| ପତାକା ଆକାର କ୍ରମ | ଆକାର | | କେଉଁ କ୍ଷେତ୍ରରେ ପ୍ରୟୋଗ ହେବ |
|---|---|---|---|
| | ଫୁଟ ଓ ଇଞ୍ଚରେ ଲମ୍ବ ଓସାର | ମିଲିମିଟରରେ ଲମ୍ବ ଓସାର | |
| ୧ | ୨୧'X ୧୪' | ୬୩୦୦ X ୪୨୦୦ | ସେଣ୍ଟ ଜର୍ଜ ଫୋର୍ଟ-ଚେନ୍ନାଇ ଇଂରେଜମାନେ ଏଠାରେ ତାଙ୍କର ପ୍ରଥମ ୟୁନିୟନ ଜ୍ୟାକ୍ ପତାକା ଉଡ଼ାଇଥିଲେ । |
| ୨ | ୧୨'X ୮' | ୩୬୦୦ X୨୪୦୦ | ଲାଲକିଲ୍ଲା, ରାଷ୍ଟ୍ରପତି ଭବନ-ଦିଲ୍ଲୀ |
| ୩ | ୯'X୬' | ୨୭୦୦X ୧୮୦୦ | ପାର୍ଲାମେଣ୍ଟ ଭବନ-ଦିଲ୍ଲୀ |
| ୪ | ୬'X ୪' | ୧୮୦୦ X ୧୨୦୦ | ରାଜ୍ୟ ସଚିବାଳୟ ବା ଅନୁରୂପ ସରକାରୀ କାର୍ଯ୍ୟାଳୟ |
| ୫ | ୪' ୫"X ୩' | ୧୩୫୦ X ୯୦୦ | କ୍ଷୁଦ୍ର ସରକାରୀ କାର୍ଯ୍ୟାଳୟ |
| ୬ | ୩' X ୨' | ୯୦୦ X ୬୦୦ | ପ୍ରକୋଷ୍ଠ ମଧ୍ୟରେ ଏବଂ କାନ୍ଥରେ |
| ୭ | ୧୮" X ୧୨" | ୪୫୦ X ୩୦୦ | ଅତି ଗୁରୁତ୍ୱପୂର୍ଣ୍ଣ ରାଷ୍ଟ୍ରନାୟକଙ୍କ ଉଡ଼ାଜାହାଜ ଓ ରାଷ୍ଟ୍ରପତିଙ୍କ ରେଳଗାଡ଼ି |
| ୮ | ୯" X ୬" | ୨୨୫ X ୧୫୦ | ଉଚ୍ଚପଦରେ ଥିବା ଜନନାୟକଙ୍କ ମୋଟରକାର |
| ୯ | ୬" X ୪" | ୧୫୦ X ୧୦୦ | ଟେବୁଲ ପତାକା |

## ଜାତୀୟ ପତାକା ଉତ୍ତୋଳନ ବିଧି

ଜାତୀୟ ପତାକା ଉତ୍ତୋଳନ ବେଳେ ସମସ୍ତେ ମାନିବା ପାଇଁ କେତେକ ନିୟମ ବା ବିଧି ରହିଛି । ଏହି ବିଧିକୁ ଭଙ୍ଗ କଲେ ବିଚାରାଳୟରେ ଦଣ୍ଡିତ ହେବାକୁ ପଡେ । ଏହି ବିଧିକୁ ମାନି ଜାତୀୟ ପତାକା ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିବା ହେଉଛି ଆମର କର୍ତ୍ତବ୍ୟ ।

ଜାତୀୟ ପତାକାକୁ ଉଡ଼ାଇବା ବେଳେ କେଶରୀ ରଙ୍ଗ ବିଶିଷ୍ଟ ପଟି ସବା ଉପର ଆଡ଼କୁ ରହିବ । ଅନ୍ୟକୌଣସି ପତାକା ଜାତୀୟ ପତାକାର ଉର୍ଦ୍ଧ୍ୱରେ କିମ୍ବା ଡାହାଣ ପଟରେ ରହିବା ଅନୁଚିତ । ଯଦି ଅନ୍ୟ କୌଣସି ପତାକା ଜାତୀୟ ପତାକା ସହ ଗୋଟିଏ ଧାଡ଼ିରେ ରହିବାର ଆବଶ୍ୟକତା ପଡ଼େ ତେବେ ସେଗୁଡିକ ଜାତୀୟ ପତାକାର ବାମ ପଟେ ସ୍ଥାନ ପାଇବ । ଏହି ପତାକାମାନ ସମୂହଭାବରେ ଯେତେବେଳେ ଉଡ଼ା ହେବ, ଜାତୀୟ ପତାକା ସବୁଠାରୁ ଉର୍ଦ୍ଧ୍ୱରେ ସ୍ଥାନ ପାଇବ । ଜାତୀୟ ପତାକା ସମ୍ମାନଜନକ ଭାବେ ଉତ୍ତୋଳିତ ହେବ । ଏହି ପତାକା ଧରି ରାସ୍ତାମଝିରେ ଶୋଭାଯାତ୍ରା ଯାଉଥିଲେ କେତେକ ନିୟମ ମାନିବାକୁ ହୁଏ । ଯଦି ଶୋଭା ଯାତ୍ରା ପୂର୍ବରୁ ପଶ୍ଚିମକୁ ଯାଉଥାଏ ପତାକାର ଲୋହିତ ରଙ୍ଗ ପଟି ଉତ୍ତର ଦିଗକୁ ଢ଼ଳିବ । ଠିକ୍ ସେପରି ଉତ୍ତର ଦିଗରୁ ଦକ୍ଷିଣ ଦିଗକୁ ଯାଉଥିଲେ ଏହା ପୂର୍ବ ଦିଗକୁ ଢ଼ଳିବ । ଯେତେବେଳେ ଜାତୀୟ ପତାକା ଥାଇ ବକ୍ତା ଭାଷଣ ଦିଅନ୍ତି ସେତେବେଳେ ପତାକାଟି ବକ୍ତାଙ୍କ ଡ଼ାହାଣ ପଟେ ରହିବା ଉଚିତ ଓ ବକ୍ତାଙ୍କ ଉପରେ ହିଁ ଉଡିବ । ପତାକାଟି ଯେତେବେଳେ କାରରେ ଲାଗିଥାଏ, ସେତେବେଳେ ଏହା କାର ଆଗରେ ଥିବା ବନେଟ୍‌ର ମଝି ଅଂଶରେ ସ୍ଥାନିତ ହେବା ଆବଶ୍ୟକ ।

ଅନେକ କ୍ଷେତ୍ରରେ ଦେଖାଯାଉଛି ଜାତୀୟ ପତାକା ଉତ୍ତୋଳନ ଠିକ୍ ରୂପେ କରାଯାଉନାହିଁ । ପତାକା ଉତ୍ତୋଳନ ହେବାପରେ ସମବେତ ଜନତା, ମନ୍ତ୍ରୀ, ମାଜିଷ୍ଟ୍ରେଟ୍, ଛାତ୍ରଛାତ୍ରୀ, ସମାଜ ସେବକ, ସାମ୍ବାଦିକ ଯେ ଥାଆନ୍ତୁ କାହିଁକି ବିଭିନ୍ନ ଢ଼ଙ୍ଗରେ ଠିଆ ହେଉଛନ୍ତି । ଏହା ଜାତୀୟ ପତାକା ପ୍ରତି ଅସମ୍ମାନ । ଉପସ୍ଥିତ ସମସ୍ତ ଜନତା ସାବଧାନ ଢ଼ଙ୍ଗରେ ପତାକାକୁ ଦୃଷ୍ଟିରଖି ସମ୍ମାନ ଦେବା କଥା ।

ଜାତୀୟ ପତାକା ଉତ୍ତୋଳନ କରିବାର ନିର୍ଦ୍ଦିଷ୍ଟ ସମୟ ରହିଛି । କୌଣସି ଉତ୍ସବ, ସମ୍ମିଳନୀ ବା କାର୍ଯ୍ୟକ୍ରମରେ ଜାତୀୟ ପତାକା ଉତ୍ତୋଳନ ସମୟ ଧାର୍ଯ୍ୟ ହୋଇଥିଲେ ମଧ୍ୟ ମୁଖ୍ୟ ଅତିଥିଙ୍କର ଆଗମନ ସମସ୍ୟା ଯୋଗୁଁ ବିଳମ୍ବରେ ପତାକା ଉତ୍ତୋଳନ ହେବା ଦେଖା ଦେଉଛି । ଏହା ଖାଲି ଜାତୀୟ ପତାକା ପ୍ରତି ଅବମାନନା ନୁହେଁ, ସମଗ୍ର ଜାତି

ପ୍ରତି ଦୁର୍ବ୍ୟବହାର ଓ ଅସମ୍ମାନ । ଏଥିପ୍ରତି ଅତିଥିମାନେ ସତର୍କ ରହିବା ଉଚିତ । ଏତଦ୍ ବ୍ୟତୀତ ପତାକାକୁ ଉପଯୁକ୍ତଭାବେ ଖୁଣ୍ଟରେ ବାନ୍ଧିବା ଆବଶ୍ୟକ, ନଚେତ୍ ଉତ୍ତୋଳନ ବେଳେ ଏହା ଖସିପଡ଼ିବାର ସମ୍ଭାବନା ରହିଛି । ଜାତୀୟ ପତାକା ଉତ୍ତୋଳନର ଯେଉଁଭଳି ନୀତି ନିୟମ ଅଛି ଅବତରଣରେ ମଧ୍ୟ ତା'ଠାରୁ ଅଧିକ ନିୟମ ରହିଛି । ସୂର୍ଯ୍ୟାସ୍ତ ପୂର୍ବରୁ ଜାତୀୟ ପତାକାକୁ ଅବତରଣ କରିବା ଉଚିତ । ଖୁବ୍ ଧୀରେ ଧୀରେ ତାହା ଅବତରଣ କରି ସମ୍ମାନର ସହିତ ତାକୁ ଭାଙ୍ଗିନେଇ ରଖିବାକୁ ହେବ ।

ଜାତୀୟ ପତାକା ଉତ୍ତୋଳନ ବେଳେ କିଭଳି ସମ୍ମାନ ଦେଇ ଉତ୍ତୋଳନ କରାଯାଏ । ତା'ର ଏକ ପଦ୍ଧତି ଅଛି -

## ଧ୍ୱଜା ବନ୍ଦନା କରିବାର ପଦ୍ଧତ

ଉକ୍ତ ପଦ୍ଧତି ବେଲଗମ୍ ସେବା ଦଳର କେତେକ ସ୍ୱେଚ୍ଛାସେବୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା ଏବଂ ୧୯୨୪-ବେଲଗମ୍ କଂଗ୍ରେସରେ ଏହା ପ୍ରଥମେ ଅନୁସୃତ ହୋଇଥିଲା ।

୧) ସମସ୍ତେ ଧ୍ୱଜାକୁ ମୁହଁ କରି ଦଣ୍ଡାୟମାନ ରହିବେ । ୨) ଧ୍ୱଜାରକ୍ଷକ ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କୁ ସତର୍କ କରିବା ପାଇଁ ହୁଇସିଲ ବଜାଇବେ । ୩) ସମସ୍ତେ 'ସାବଧାନ' ଠାଣିରେ ରହିବେ । ୪) ଧ୍ୱଜା ବନ୍ଦନା 'ବନ୍ଦେ ମାତରମ୍' ସମସ୍ତଙ୍କ ଦ୍ୱାରା ଗାନ କରାଯିବ । ୫) ଏହାପରେ ମୁଖ୍ୟଅତିଥି ଧ୍ୱଜା ଉତ୍ତୋଳନ କରିବେ । ଏହି ସମୟରେ ଧ୍ୱଜା ରକ୍ଷକ ଓ ମୁଖ୍ୟ ଅତିଥି ପରସ୍ପରକୁ ସାମ୍ନା ସାମ୍ନି ହୋଇ ରହିବେ । ୬) 'ସଲାମ ଆମ୍ ଦୋ' ଆଦେଶ ଦିଆଯିବା ମାତ୍ରେ ସମସ୍ତେ ଧ୍ୱଜାକୁ ସମ୍ମାନ ଜଣାଇବେ । ୭) 'ଜୈସେ' ଆଦେଶ ଦିଆଯିବା ପରେ ସମସ୍ତେ ପୂର୍ବ ଅବସ୍ଥାକୁ ଆସିବେ । ମୁଖ୍ୟ ଅତିଥି ଓ ଧ୍ୱଜା ରକ୍ଷକ ବର୍ତ୍ତମାନ ଉପସ୍ଥିତ ବ୍ୟକ୍ତିମାନଙ୍କୁ ସମ୍ମୁଖ କରି ରହିବେ । ୮) ତତ୍ପରେ ଧ୍ୱଜା ବନ୍ଦନା 'ଝଣ୍ଡା ଉଁଚା ରହେ ହମାରା' ଗାନ କରାଯିବ । ୯) 'ଆସାନ ହୋ' ଆଦେଶ ଦିଆଯିବା କ୍ଷଣି ସମସ୍ତେ ଆରାମଦାୟକ ଭାବେ ଦଣ୍ଡାୟମାନ ହୋଇ ରହିବେ । ୧୦) ମୁଖ୍ୟଅତିଥି ଉପସ୍ଥିତ ଜନତାଙ୍କୁ ସମ୍ବୋଧନ କରିବେ । ୧୧) ସମସ୍ତେ 'ସାବଧାନ' ସ୍ଥିତିକୁ ଆସିବେ । ୧୨) 'ଆଜାଦ୍ ହିନ୍ଦ୍ ଜିନ୍ଦାବାଦ', 'ବନ୍ଦେ ମାତରମ୍' ଧ୍ୱନି ଦିଆଯିବ । ୧୩) 'ବରଖାସ୍ତ' ଆଦେଶ ଦିଆଯିବା ପରେ କାର୍ଯ୍ୟକ୍ରମ ସମାପ୍ତ ହେବ ।

ଜାତୀୟ ପତାକା ଉତ୍ତୋଳନ ବେଳେ ଏହି ପଦ୍ଧତି ପ୍ରାୟତଃ ବିଦ୍ୟାଳୟ ମାନଙ୍କରେ ଅନୁସୃତ ହେଉଛି । ସ୍ୱାଧୀନତା ପୂର୍ବରୁ ଧ୍ୱଜା ବନ୍ଦନାରେ ବନ୍ଦେ ମାତରଂ ସଙ୍ଗୀତ ଆବୃତ୍ତି ହେଉଥିଲା । ଏବେ ତା' ପରିବର୍ତ୍ତେ ଆମର ଜାତୀୟ ସଙ୍ଗୀତ ଜନଗଣମନ

ଅଧିନାୟକ ଗାନ କରାଯାଉଛି । କେତେକ ସ୍ଥଳରେ ଉଭୟ ସଙ୍ଗୀତ ଆବୃତ୍ତି କରାଯାଉଛି ।

ଏହି ସଂଗୀତ ଦୁଇଟି ନିମ୍ନରେ ଉପସ୍ଥାପନ କଲି -

<u>ବନ୍ଦେ ମାତରମ୍</u>

ବନ୍ଦେ ମାତରମ୍
ସୁଜଲାଂ ସୁଫଳାଂ ମଳୟଜ - ଶୀତଳାମ୍
ଶସ୍ୟ - ଶ୍ୟାମଳାଂ ମାତରମ୍ ।
ଶୁଭ୍ର - ଜ୍ୟୋତ୍ସ୍ନା - ପୁଲକିତ - ଯାମିନୀମ୍
ଫୁଲ୍ଲ - କୁସୁମିତ - ଦ୍ରୁମଦଳ - ଶୋଭିନୀମ୍
ସୁହାସିନୀଂ ସୁମଧୁର - ଭାଷିନୀମ୍
ସୁଖଦାଂ ବରଦାଂ ମାତରମ୍ । ବନ୍ଦେ ମାତରମ୍ ।
କୋଟି - କୋଟି କଣ୍ଠ କଳ - କଳ ନିନାଦ କରାଲେ
କୋଟି - କୋଟି ଭୁଜୈର୍ଧୃତ - ଖର - କରବାଲେ
ଅବଲା କେନୋମା ଏତୋବଲେ !
ବହୁବଲ ଧାରିଣୀଂ ନମାମି ତାରିଣୀଂ
ରିପୁଦଲବାରିଣୀଂ ମାତରମ୍ । ବନ୍ଦେ ମାତରମ୍ ।
ତୁମି ବିଦ୍ୟା ତୁମି ଧର୍ମ ତୁମି ହୃଦି ତୁମି ମର୍ମ
ତ୍ୱଂ ହି ପ୍ରାଣାଃ ଶରୀରେ
ବାହୁତେ ତୁମି ମା ଶକ୍ତି ହୃଦୟେ ତୁମି ମା ଭକ୍ତି
ତୋମାରି ପ୍ରତିମା ଗଢ଼ି ମନ୍ଦିରେ ! ବନ୍ଦେ ମାତରମ !
ତ୍ୱଂ ହି ଦୁର୍ଗା ଦଶ ପ୍ରହରଣ ଧାରିଣୀ
କମଲା କମଲ ଦଳ ବିହାରିଣୀ
ବାଣୀ ବିଦ୍ୟାଦାୟିନୀଂ ନମାମି ତ୍ୱାମ୍
ନମାମି କମଲାମ୍ ଅମଲାମ୍ ଅତୁଲାମ୍
ସୁଜଲା ସୁଫଲାଂ ମାତରମ୍ । ବନ୍ଦେ ମାତରମ୍ ।
ଶ୍ୟାମଲାଂ ସରଲାଂ ସୁସ୍ମିତାଂ ଭୂଷିତାମ୍
ଧରଣୀଂ ଭରଣୀଂ ମାତରମ୍ । ବନ୍ଦେ ମାତରମ୍ ।
ଭାରତ ମାତାକୀ ଜୟ ।।

- ବଙ୍କିମ ଚନ୍ଦ୍ର ଚଟ୍ଟୋପଧ୍ୟାୟ -

## ଜାତୀୟ ସଙ୍ଗୀତ

ଜନ-ଗଣ ମନ ଅଧିନାୟକ ଜୟ ହେ
ଭାରତ ଭାଗ୍ୟ ବିଧାତା,
ପଞ୍ଜାବ, ସିନ୍ଧୁ, ଗୁଜରାଟ, ମରାଠା
ଦ୍ରାବିଡ଼, ଉତ୍କଳ, ବଙ୍ଗ
ବିନ୍ଧ୍ୟ, ହିମାଚଳ, ଯମୁନା, ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବଶୁଭ ନାମେ ଜାଗେ,
ତବ ଶୁଭ ଆଶିଷ ମାଗେ
ଗାଏ ତବ ଜୟ ଗାଥା
ଜନ-ଗଣ ମଙ୍ଗଳ ଦାୟକ ଜୟହେ
ଭାରତ - ଭାଗ୍ୟ - ବିଧାତା
ଜୟ ହେ, ଜୟହେ, ଜୟହେ,
ଜୟ ଜୟ ଜୟ
ଜୟ ହେ

- ରବୀନ୍ଦ୍ର ନାଥ ଠାକୁର -

## ପତାକା ଉତ୍ତୋଳନ କରାଯାଉଥିବା ଦିବସ

ଜାତୀୟ ପତାକା ରାଷ୍ଟ୍ରୀୟ ଦିବସ ମାନଙ୍କରେ ଉତ୍ତୋଳିତ ହେବ । ଆମ ଦେଶରେ ସ୍ୱାଧୀନତା ଦିବସ (ଅଗଷ୍ଟ ୧୫), ସାଧାରଣତନ୍ତ୍ର ଦିବସ (ଜାନୁୟାରୀ ୨୬), ଶିଶୁ ଦିବସ (ନଭେମ୍ବର ୧୪), ଶହୀଦ ଦିବସ (ଜାନୁୟାରୀ ୩୦), ଗୁରୁ ଦିବସ (ସେପ୍ଟେମ୍ବର ୫), ଚରଖା ଦିବସ ବା ଗାନ୍ଧୀଜୟନ୍ତୀ (ଅକ୍ଟୋବର ୨), ନୌବାହିନୀ ଦିବସ (ଡିସେମ୍ବର ୪), ବିମାନ ବାହିନୀ ଦିବସ (ଅକ୍ଟୋବର ୮), କୃଷକ ଦିବସ (ଡିସେମ୍ବର ୨୩) ଓ ଜାତୀୟ ଯୁବ ଦିବସ (ଜାନୁୟାରୀ ୧୨) କୁ ରାଷ୍ଟ୍ରୀୟ ଦିବସରୂପେ ଗ୍ରହଣ କରିଥାଉ । କିନ୍ତୁ ଏହି ଦିବସମାନଙ୍କ ମଧ୍ୟରୁ ସ୍ୱାଧୀନତା ଦିବସ, ଜନରାଜ୍ୟ ଦିବସ ବା ସାଧାରଣତନ୍ତ୍ର ଦିବସ ଏବଂ ଗାନ୍ଧୀ ଜୟନ୍ତୀ ବା ଚରଖା ଦିବସରେ ସାଧାରଣତଃ ଜାତୀୟ ପତାକା ଉତ୍ତୋଳିତ ହୋଇଥାଏ । ଏହି ଉତ୍ସବ ପାଳନ ସମୟରେ ଜାତୀୟ ପତାକାକୁ ମୋଟର କାର କିମ୍ବା ଅନ୍ୟ କୌଣସି ଯାନବାହନରେ ଖଞ୍ଜାଯିବା ଉଚିତ ନୁହେଁ । ପତାକା

ସ୍ତମ୍ଭ ପତାକା ଓସାରର ୧୦ଗୁଣ ହେବ ଓ ସ୍ତମ୍ଭର ୧/୧୦ ଅଂଶ ପୋତା ହେବ । ପତାକା ବନ୍ଧନ ପାଇଁ ବ୍ୟବହୃତ ରଜ୍ଜୁ ଶ୍ୱେତ ସୂତାରେ ପ୍ରସ୍ତୁତ ହେବ ଓ ଏହାର ଦୈର୍ଘ୍ୟ ସ୍ତମ୍ଭର ଦୁଇଗୁଣ ହେବ । ପତାକା ସକାଳେ ଉତ୍ତୋଳିତ ହୋଇ ସୂର୍ଯ୍ୟାସ୍ତ ପୂର୍ବରୁ ଅବତରଣ କରାଯିବ । ବର୍ଷା, ତୋଫାନ ଭଳି ପାଖରେ ପତାକା ଉଡିଯିବାର ଆଶଙ୍କା ଥିବାରୁ ବିଧିରକ୍ଷା ପାଇଁ ଉତ୍ତୋଳନ ପରେ ଅବତରଣ କରାଯିବ । କୌଣସି ରାଷ୍ଟ୍ର ନାୟକଙ୍କ ବିୟୋଗରେ ରାଷ୍ଟ୍ରୀୟ ଶୋକ ସୂଚନା ସ୍ୱରୂପ ପତାକା ସ୍ତମ୍ଭର ଅଗ୍ରଭାଗରୁ କିଛି ନିମ୍ନକୁ ଖସାଇ ଆଣି ଉଡ଼ାଯାଏ ।

ପତାକା ଓଲଟା ଉଡ଼ିବା ବିପ୍ଳବର ସୂଚନା ଦିଏ । ସେଥିପ୍ରତି ସତର୍କ ଦୃଷ୍ଟି ଦିଆଯିବା ଉଚିତ । ଶୋଭାଯାତ୍ରା କିମ୍ବା ପ୍ୟାରେଡ୍‌ରେ ଜାତୀୟ ପତାକାକୁ ନେବାବେଳେ ଏହା ପ୍ରଥମ ଧାଡ଼ିରେ ଡାହାଣ ପଟେ ସ୍ଥାନ ପାଇବ । ଅନ୍ୟ ପତାକା ମାନଙ୍କ ସହିତ ଯଦି ଗୋଟିଏ ଧାଡ଼ିରେ ନେବାର ଆବଶ୍ୟକତା ପଡ଼େ ତେବେ ଏହା ସମ୍ମୁଖଭାଗର ଠିକ୍ କେନ୍ଦ୍ରରେ ସ୍ଥାନ ପାଇବ । ଶୋଭାଯାତ୍ରାରେ ଗଲାବେଳେ ଅଗ୍ରଣୀ ଡାହାଣ କାନ୍ଧରେ ପତାକା ଧରିବେ । ଜାତୀୟ ପତାକା ଥାଇ ଅନ୍ୟକୌଣସି ଶୋଭାଯାତ୍ରା ଆଗେଇ ଆସୁଥିବାର ଦେଖାଗଲେ ଅପର ମାର୍ଗରୁ ଆସୁଥିବା ଜନସାଧାରଣ ଛିଡା ହୋଇ ପତାକାକୁ ସମ୍ମାନ ପ୍ରଦର୍ଶନ କରିବେ । ଜାତୀୟ ପର୍ବଦିନମାନଙ୍କରେ ସର୍ବସାଧାରଣ ନିଜ ବାସଭବନରେ ଓ ବ୍ୟବସାୟ ପ୍ରତିଷ୍ଠାନରେ ଏହା ଉଡ଼ାଇ ପାରିବେ । ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ସୁପ୍ରିମ କୋର୍ଟ, ହାଇକୋର୍ଟ, କମିଶନରଙ୍କ କାର୍ଯ୍ୟାଳୟ, ଜେଲ୍ ଓ ସଚିବାଳୟ ଆଦି ସରକାରୀ ଦପ୍ତର ମାନଙ୍କରେ ସବୁଦିନ ଉଡିପାରିବ । ଏହା ମଧ ଦେଶର ସୀମାନ୍ତ ଅଞ୍ଚଳରେ ଉଡ଼ିପାରିବ । ପତାକା ଓ ରଜ୍ଜୁକୁ ଭୂମି ସ୍ପର୍ଶକରିବାକୁ ଦିଆଯିବ ନାହିଁ । ମିଳିତ ଜାତିସଂଘ ଦିବସ ଭଳି ଆନ୍ତର୍ଜାତିକ ଦିବସ ମାନଙ୍କରେ ବହୁ ବିଭିନ୍ନ ରାଷ୍ଟ୍ରର ପତାକା ଗୋଟିଏ ରଜ୍ଜୁରେ ତଳକୁ ତଳ କିମ୍ବା ଗୋଟିଏ ଧାଡ଼ିରେ ଆଗପଛ ହୋଇ ଉତ୍ତୋଳିତ ହୋଇଥାଏ । ବିଶେଷ ଦିବସମାନଙ୍କରେ ନିଜ ଦେଶର ପତାକାକୁ ଆଗରେ ରଖିବାର ବିଧାନ ରହିଛି । ଦେଶର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଆଦି ରାଷ୍ଟ୍ରୀୟ ନେତା ଏବଂ ଦେଶ ପାଇଁ ପ୍ରାଣବଳୀ ଦେଇଥିବା ଯବାନ ମାନଙ୍କ ମରଶରୀରକୁ ଜାତୀୟ ପତାକା ଦ୍ୱାରା ଆଚ୍ଛାଦନ କରି ରାଷ୍ଟ୍ରୀୟ ସମ୍ମାନ ଦିଆଯାଇଥାଏ ।

ସଭା ସମିତିରେ ସଭାପତି ମଞ୍ଚର ପୃଷ୍ଠଦେଶରେ ଡାହାଣ କଡକୁ ପତାକା ରହିବ । ଛତା ତଳେ ପତାକା ଧରାଯିବ ନାହିଁ । ପତାକାକୁ ଟେବୁଲ କନା, ରୁମାଲ, ବ୍ୟାଗ, ପରଦାଝାଡ଼ଣ ବା କୌଣସି ବସ୍ତୁର ଆଚ୍ଛାଦନରୂପେ, ବ୍ୟବସାୟ, ବିଜ୍ଞାପନ କିମ୍ବା ଲୁଗାର ଧଡିରୂପେ ବ୍ୟବହାର କରାଯିବ ନାହିଁ । ଦୀର୍ଘ ଦିନ ବ୍ୟବହାର ପରେ ପତାକା ଚିରିଗଲେ ବା ସେଥିରୁ ରଂଗ ଛାଡ଼ିଗଲେ ତାହାକୁ ଆଉ ବ୍ୟବହାର ନ କରି ଶବସଂସ୍କାର କଲାପରି ସମ୍ମାନ ଦେଇ ଭସ୍ମ କରାଯିବ ବା ସମାଧି ଦିଆଯିବ ।

# ବହୁ ଜଣା ଅଜଣାରେ ତ୍ରିରଙ୍ଗା ପତାକା

ଆମେ ସମସ୍ତେ ଜାଣିଛେ ଆମ ଜାତୀୟ ପତାକା ତ୍ରିରଙ୍ଗା । ତ୍ରିରଙ୍ଗା ଅର୍ଥ ତିନୋଟି ରଙ୍ଗ । ଆମେ ପୁଣି ଗୀତରେ ବୋଲୁଛୁ - "ନାଲି ଧଳା ପୁଣି ସବୁଜ ରଙ୍ଗରେ ତ୍ରିରଙ୍ଗ ପତାକା ତୁହି" । କିନ୍ତୁ ପ୍ରକୃତରେ ତ୍ରିରଙ୍ଗା ପତାକାରେ ଚାରୋଟି ରଙ୍ଗ ଅଛି । ମଝି ଧଳା ପଟିରେ ଅଶୋକ ଚକ୍ର ରହିଛି ଯାହା ନୀଳ ସ୍ୟାହି ରଙ୍ଗର ଅଟେ ।

୧୯୪୭ ମସିହା ଜୁଲାଇ ୨୨ ତାରିଖ ଦିନ ପଣ୍ଡିତ ଜବାହରଲାଲ ନେହେରୁ ଭାରତ ସାମ୍ବିଧାନିକ ସଭାରେ ସର୍ବ ପ୍ରଥମ କରି ୨ଟି ଜାତୀୟ ପତାକା ପ୍ରଦର୍ଶନ କରିଥିଲେ । ସେଥି ମଧ୍ୟରୁ ଗୋଟିଏ ସୂତା ଖଦଡ଼ ଓ ଅନ୍ୟଟି ରେଶମ ଖଦଡ଼ । ସେ ଘୋଷଣା କରିଥିଲେ ଯେ, ଏହି ୨ଟି ପତାକା ସର୍ବ ପ୍ରଥମ କରି ପ୍ରଦର୍ଶିତ ହୋଇଥିବାରୁ ଏହା ଜାତୀୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇ ରହିବ । ସେଥିମଧ୍ୟରୁ ସୂତା ଖଦଡ଼ରେ ତିଆରି ପତାକାଟି କାନପୁର ଠାରେ ଥିବା ହସ୍ତତନ୍ତ ବିଭାଗ ମୁଖ୍ୟ ପରିଦର୍ଶକଙ୍କ ଦାୟିତ୍ୱରେ ସିଲ ମୋହର ହୋଇ ରହିଛି । ତେବେ ରେଶମ ଖଦଡ଼ ପତାକାଟି ୧୯୪୭ ମସିହା ଅଗଷ୍ଟ ୧୬ ତାରିଖ ଦିନ ସକାଳ ଘ ୮-୩୦ ମିନିଟ୍ ସମୟରେ ପଣ୍ଡିତ ଜବାହରଲାଲ ନେହେରୁ ଲାଲକିଲ୍ଲାଠାରେ ଉତ୍ତୋଳନ କରିଥିବାର ଅନୁମାନ କରାଯାଏ ।

ଭାରତ ୧୯୪୭ ମସିହା ଅଗଷ୍ଟ ୧୫ରେ ସ୍ୱାଧୀନ ହେଲା । ସେହିଦିନ ଭାରତ ତଥା ଭାରତ ବାହାରେ ବିଭିନ୍ନ ଦେଶରେ ପତାକା ଉତ୍ତୋଳିତ ହୋଇଥିଲା । ଏପରିକି ବ୍ରିଟିଶ୍ ଠାରୁ ସାର୍ବଭୌମ କ୍ଷମତା ପାଇଥିବା କେତେକ ଦେଶୀୟ ରାଜ୍ୟରେ ମଧ୍ୟ ପତାକା ଉତ୍ତୋଳିତ ହୋଇଥିଲା ।

୧୯୪୭ରେ ଭାରତ ସ୍ୱାଧୀନ ହୋଇ ଥିଲେ ମଧ୍ୟ ଭାରତ ଅଧୀନରେ ଥିବା ଲାକ୍ଷା, ମିନିକୟ ଦ୍ୱୀପରେ ଥିବା ବତୀଘର ଅଧିକାରୀ ଏହା ଜାଣିପାରି ନଥିଲେ । ଫଳରେ ସେଠାରେ ୧୯୫୬ ମସିହା ଏପ୍ରିଲ ୨ ତାରିଖ ପର୍ଯ୍ୟନ୍ତ ଇଂଲଣ୍ଡର ୟୁନିୟନ ଜ୍ୟାକ୍ ପତାକା ଉଡୁଥିଲା । ଏହି ଇଂରେଜ ଅଧିକାରୀ ମିଃ ରିଜ୍ ଯେତେବେଳେ ଜାଣିଲେ ଭାରତ ସ୍ୱାଧୀନ ହୋଇଛି ସେ ଜାହାଜରେ ଇଂଲଣ୍ଡ ଚାଲିଗଲେ ।

୧୯୫୩ ମଇ ମାସ ୨୯ ତାରିଖ । ସେଦିନ ହିମାଳୟର ଏଭରେଷ୍ଟ ଶୃଙ୍ଗରେ ପ୍ରଥମ କରି ପଦାର୍ପଣ କଲେ ସେର୍ପା ଟେନ୍‌ଜିଙ୍ଗ ଓ ଏଡ୍‌ମଣ୍ଡ ହିଲାରୀ । ସେଠାରେ ଉଡ଼ିଲା ଭାରତୀୟ ଜାତୀୟ ପତାକା ତ୍ରିରଙ୍ଗା ସହ ନେପାଳର ଜାତୀୟ ପତାକା ଓ ଇଂଲଣ୍ଡର ୟୁନିୟନ ଜ୍ୟାକ । ଏହାପରେ ଅବଶ୍ୟ ଭାରତର ଜାତୀୟ ପତାକା ସେଠାରେ ଆଠଥର ଉଡ଼ିସାରିଲାଣି ।

୧୯୭୧ ମସିହାରେ ଆପୋଲୋ - ୧୫ ଯାନରେ ଭାରତର ତ୍ରିରଙ୍ଗା

ଯାଇଥିଲା । ପୁଣି ୧୯୮୪ ମସିହା ଏପ୍ରିଲ ମାସରେ ଭାରତ-ସୋଭିଏତ ଗୁଷ ମିଳିତ ସହଯୋଗରେ ଯେତେବେଳେ ମହାକାଶ ଯାତ୍ରା ହୁଏ, ସେତେବେଳ ଭାରତର ମହାକାଶ ଉଇଙ୍ଗ୍ କମାଣ୍ଡର ରାକେଶ ଶର୍ମା ସାଥିରେ ପତାକା ବହନ କରିଥିଲେ । ଏହି ପତାକା ଏବେ ନୂଆଦିଲ୍ଲୀଠାରେ ଥିବା ନେହେରୁ ପ୍ଲାନେଟରିଅମରେ ପ୍ରଦର୍ଶିତ ହେଉଛି ।

ଭାରତ ସ୍ୱାଧୀନ ହୋଇଥିଲେ ମଧ ଗୋଆ, ଡାମନ, ଡ଼ିଉ ପର୍ତ୍ତୁଗୀଜ ଶାସନ ଅଧୀନରେ ଥିଲା । ୧୯୬୧ ମସିହା ଡିସେମ୍ବର ୩୧ ତାରିଖରେ ଭାରତୀୟ ପଦାତିକ ସୈନ୍ୟ ଓ ନୌସେନା ଏହି ଅଞ୍ଚଳକୁ ମୁକ୍ତ କଲେ । ଫଳରେ ସେହିଦିନ ଠାରୁ ସେଠାରେ ଭାରତୀୟ ଜାତୀୟ ପତାକା ଉତ୍ତୋଳିତ ହେଲା । ଫ୍ରାନ୍ସ ଅଧୀନରେ ପଣ୍ଡିଚେରୀ ଥିଲା । ଏହା ୧୯୫୪ ମସିହା ଅକ୍ଟୋବର ୨୧ ତାରିଖରେ ମୁକ୍ତ ହୋଇ ଭାରତ ଅଧୀନକୁ ଆସିଲା । ସେହିଦିନଠାରୁ ତ୍ରିରଙ୍ଗା ପତାକା ଏଠାରେ ଉଡ଼ିଲା । ୧୯୫୪ ମସିହା ଅଗଷ୍ଟ ୨ ତାରିଖରେ ଦାଦ୍ରା, ନଗର ହାବେଳି ପର୍ତ୍ତୁଗୀଜ ଅଧୀନରୁ ମୁକ୍ତ ହେଲା । ସେହିଦିନଠାରୁ ଏଠାରେ ତ୍ରିରଙ୍ଗା ପତାକା ଉତ୍ତୋଳିତ ହେଲା । ସିକିମରେ ଚୋଗ୍ୟାଲଙ୍କ (ରାଜା) ଶାସନ ଥିଲା । ସିକିମ ବିଧାନସଭା ୧୯୭୫ ମସିହା ଏପ୍ରିଲ ୧୦ ତାରିଖରେ ଚୋଗ୍ୟାଲ ଶାସନ ବିଲୋପ ପାଇଁ ସ୍ଥିର କଲେ । ଭାରତର ୩୮ ତମ ସମ୍ବିଧାନ ସଂଶୋଧନ ହୋଇ ଏହା ୧୯୭୫ ଏପ୍ରିଲ ୨୬ ତାରିଖରେ ଭାରତର ମିଶିଲା । ଫଳରେ ଏଠାରେ ଜାତୀୟ ପତାକା ତ୍ରିରଙ୍ଗା ଉତ୍ତୋଳିତ ହେଲା ।

୧୯୭୧ ମସିହାରେ ରାଜା ମହାରାଜାମାନଙ୍କ ହାତପାଣ୍ଠି ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଉଚ୍ଛେଦ ହେଲା । ଏହି ସମୟ ପର୍ଯ୍ୟନ୍ତ ରାଜା ମହାରାଜା ଓ ଶାହା ବାଦ୍‌ଶାହା ମାନେ ସେମାନଙ୍କ ନିଜ ନିଜ ରାଜ୍ୟର ପତାକା ବ୍ୟବହାର କରୁଥିଲେ । ହାତପାଣ୍ଠି ଉଚ୍ଛେଦ ଆଇନ ଯୋଗୁଁ ସେମାନେ ନିଜ ପତାକା ବ୍ୟବହାର କରିପାରିଲେ ନାହିଁ । କିନ୍ତୁ ଭାରତୀୟ ସମ୍ବିଧାନର ୩୭୦ ଧାରା ଯୋଗୁଁ ଜାମ୍ମୁ ଓ କାଶ୍ମୀରରେ ଅଦ୍ୟାବଧି ଭାରତୀୟ ଜାତୀୟ ପତାକା ସହ ଜାମ୍ମୁ ଓ କାଶ୍ମୀର ରାଜ୍ୟର ପତାକା ଉଡୁଛି । ଏପରିକି ନୂଆଦିଲ୍ଲୀରେ ଜାମ୍ମୁ ଓ କାଶ୍ମୀର ଭବନରେ ଏହି ରାଜ୍ୟର ପତାକା ଏବେ ମଧ ଉଡୁଅଛି ।

ସବୁଠାରୁ ବଡ଼ କୌତୁହଳର ବିଷୟ ଏହି ଯେ ଖଦଡ଼ ପତାକା ତିଆରି ପାଇଁ କେବଳ କର୍ଣ୍ଣାଟକ ରାଜ୍ୟର ଧରୱାଡ଼ ଜିଲ୍ଲାର ଗରାଗ ଗ୍ରାମରେ ଏକ ଖଦୀ କେନ୍ଦ୍ର ଅଛି । ଏହି ଏକମାତ୍ର କେନ୍ଦ୍ର ସମଗ୍ର ଦେଶ ପାଇଁ ପତାକା ଯୋଗାଉଛି । ଏହି କେନ୍ଦ୍ରର ନାମ 'ଧରୱାଡ଼ ତାଲୁକ କ୍ଷେତ୍ରୀୟ ସେବାସଂଘ' । ଏହା ଜାତୀୟ ପତାକା ପ୍ରସ୍ତୁତ କରିବା ପାଇଁ କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଛି । ଆମେ ଜାଣି ଆଶ୍ଚର୍ଯ୍ୟ ହେବା ଯେ ଏକ ବର୍ଗଫୁଟ ପରିମିତ ପତାକାର ଓଜନ ୨୫୦ ଗ୍ରାମ ହେବ । ଏହା ପତାକା କୋଡ୍ ଅନୁଯାୟୀ ସ୍ଥିର ହୋଇଛି ।

ସବୁଠାରୁ ବଡ଼ ପତାକାର ଆକାର ୨୧ଫୁଟ ଲମ୍ବ ଓ ୧୪ ଫୁଟ ଓସାର ।

ଏହା ଚେନ୍ନାଇର ସେଣ୍ଟ ଫୋର୍ଟ ଜର୍ଜ ଠାରେ ଉତ୍ତୋଳିତ ହୁଏ। ଏଠାରେ ପ୍ରଥମେ ଇଷ୍ଟଇଣ୍ଡିଆ କମ୍ପାନୀ ୟୁନିୟନ ଜ୍ୟାକ୍ ପତାକା ଉଡ଼ାଇ ଥିଲେ । ଏହା ଥିଲା ୧୬୮୭ ମସିହାର ଘଟଣା । ଏତେ ବଡ଼ ପତାକା ରାଷ୍ଟ୍ରପତି ଭବନ ଓ ଲାଲକିଲ୍ଲାଠାରେ ମଧ ଉତ୍ତୋଳନ ହୁଏ ନାହିଁ ।

ସବୁଠାରୁ ସାନ ଜାତୀୟ ପତାକାର ଆକାର ହେଲା; ୬ଇଞ୍ଚ ଲମ୍ବ ଓ ୪ଇଞ୍ଚ ଓସାର । ଅନ୍ୟ ସମସ୍ତ ଆକାରର ପତାକା ଖଦଡ଼ରେ ତିଆରି ହୋଇଥିବା ବେଳେ ଏହି କ୍ଷୁଦ୍ର ପତାକାଟି ରେଶମ ସୂତାରେ ତିଆରି । ଏହା ବିଦେଶରୁ ଆସିଥିବା ପ୍ରଧାନମନ୍ତ୍ରୀ, ମନ୍ତ୍ରୀ କିମ୍ବା ରାଷ୍ଟ୍ରପତିଙ୍କ ସହ ଆଲୋଚନା ବେଳେ ଘର ମଧରେ ଟେବୁଲ ଉପରେ ସ୍ଥାନିତ ହୋଇଥାଏ ।

ବଡ଼ ବଡ଼ ସରକାରୀ କାର୍ଯ୍ୟାଳୟମାନଙ୍କରେ ଜାତୀୟ ପତାକା ଉତ୍ତୋଳନର ବିଧି ରହିଛି । ଗୋଟିଏ କାର୍ଯ୍ୟାଳୟ ଉପରେ ଗୋଟିଏ ଜାତୀୟ ପତାକା ଉତ୍ତୋଳିତ ହେବ । କିନ୍ତୁ ଭାରତରେ ଏପରି ଏକ କାର୍ଯ୍ୟାଳୟ ରହିଛି ଯାହା ଉପରେ ଏକ ସମୟରେ ଚାରୋଟି ଜାତୀୟ ପତାକା ଉଡୁଥାଏ । ତାହା ହେଉଛି ଆମ 'ପାର୍ଲାମେଣ୍ଟ ଭବନ' । ଏହାର କାରଣ ହେଲା ଏହି ଭବନର ଆକାର ଗୋଲାକାର ଓ କେନ୍ଦ୍ର ସ୍ଥଳରେ ଗମ୍ବୁଜ ନାହିଁ । ତେଣୁ ପୂର୍ବ, ପଶ୍ଚିମ, ଉତ୍ତର ଓ ପଶ୍ଚିମ ଦିଗକୁ ଚାରୋଟି ପତାକା ରହିଛି । ଏଣୁ ଯେ କୌଣସି ଦିଗରୁ ଚାହିଁଲେ ପତାକା ଦେଖିପାରିବେ ।

ଆଜି ଶହେ କୋଟିରୁ ଉର୍ଦ୍ଧ୍ୱ ଭାରତୀୟଙ୍କର ପରିଚୟ ହେଉଛି ତ୍ରିରଙ୍ଗା ପତାକା । ଭାରତବର୍ଷର ଅଖଣ୍ଡତା ତଥା ସ୍ୱାଧୀନତାର ପ୍ରତୀକ ହେବା ସହିତ ଏହା ମଧ ବିଶ୍ୱଶାନ୍ତି, ମୁକ୍ତି ଓ ପ୍ରଗତିର ବାର୍ତ୍ତାବହ ।

ଜାତୀୟ ପତାକା ଉତ୍ତୋଳନର ବିଧି ବିଧାନ ପୁସ୍ତକରେ ଉଲ୍ଲେଖ ଅଛି । ଏବେ ଦେଶର ସର୍ବୋଚ୍ଚ ନ୍ୟାୟାଳୟର ଏକ ନିଷ୍ପତ୍ତି ଫଳରେ ଏ ପରିସ୍ଥିତି ବଦଳି ଯାଇଛି । ପୂର୍ବରୁ ରାଷ୍ଟ୍ରପତି, ଉପ ରାଷ୍ଟ୍ରପତି, ପ୍ରଧାନ ମନ୍ତ୍ରୀ, ବାଚସ୍ପତି, ବିଚାରପତି ଆଦି ମାନ୍ୟଗଣ୍ୟଙ୍କ ସରକାରୀ ବାସଭବନରେ ଜାତୀୟ ପତାକା ଉତ୍ତୋଳନ କରାଯାଉଥିଲା । ପୁନଶ୍ଚ ସାଧାରଣତନ୍ତ୍ର ଦିବସ, ସ୍ୱାଧୀନତା ଦିବସ ଏବଂ ମହାତ୍ମା ଗାନ୍ଧୀଙ୍କ ଜନ୍ମ ବାର୍ଷିକୀ ଦିବସମାନଙ୍କରେ ସାଧାରଣ ନାଗରିକ ଜାତୀୟ ପତାକା ବ୍ୟବହାର କରିବାର ସୁଯୋଗ ପାଉଥିଲା । ଏବେ ସର୍ବୋଚ୍ଚ ନ୍ୟାୟାଳୟର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ପରେ କେନ୍ଦ୍ର ମନ୍ତ୍ରିମଣ୍ଡଳ ଜାତୀୟ ପତାକା ଉତ୍ତୋଳନ ଉପରୁ କେତେକ କଟକଣା ଉଠାଇଛନ୍ତି । ଫଳରେ ଯେ କୌଣସି ସାଧାରଣ ନାଗରିକ ଘର ଉପରେ ମର୍ଯ୍ୟାଦା ସହକାରେ ପ୍ରତ୍ୟେକ ଦିନ ଜାତୀୟ ପତାକା ଉତ୍ତୋଳନ କରି ଜାତୀୟତାଭାବ ପ୍ରଦର୍ଶନ କରିପାରିବେ । ଏହା ୨୦୦୨ ଜାନୁୟାରୀ ୨୬ ତାରିଖ ଠାରୁ କାର୍ଯ୍ୟକାରୀ ହେଲା । କିଂତୁ ଜାତୀୟ ପତାକା ଉତ୍ତୋଳନରେ ଅନ୍ୟାନ୍ୟ ବିଧିବିଧାନକୁ ଉଲ୍ଲଘନ କରାଯିବ ନାହିଁ ।